ସତ୍ୟବୀର

# ହରିଶ୍ଚନ୍ଦ୍ର




## ମାନବିକ

# ସତ୍ୟବୀର ହରିଶ୍ଚନ୍ଦ୍ର

ଲେଖକ : ସ୍ୱର୍ଗୀୟ ଗିଜୁଭାଇ ବାଧେକା
ଅନୁବାଦ : ପୂରବୀ ପଟ୍ଟନାୟକ
ଅଙ୍କନ : ଅସିତ୍ ଦାସ
ପ୍ରକାଶକ : **ମାନବିକ**
ତୋଟାସାହି, ମାଷ୍ଟରପଡା,
ଫୁଲବାଣୀ --୭୬୨୦୦୧
ଫୋନ୍ : (୦୬୮୪୨) ୨୪୭୬
ଅଙ୍ଗସଜ୍ଜା : ଓରିଜନ୍ କମ୍ପ୍ୟୁଟରସ୍, ଭୁବନେଶ୍ୱର ।
ମୁଦ୍ରଣ : ପଦ୍ମା କମର୍ସିଆଲ୍
ସହଯୋଗ ରାଶି : ଚାରି ଟଙ୍କା ମାତ୍ର
ପ୍ରକାଶ କାଳ : ଏପ୍ରିଲ୍ ପହିଲା, ୧୯୯୭

**ମାନବିକ...** ଏକ ସଂସ୍କାରବାଦୀ ବିଜ୍ଞାନୀ ପରିବାର । ମୂଳତଃ ଏହା ଏକ ଭାବ । ମାନବିକ ବିକାଶରେ ବିଶ୍ୱାସ ରଖୁଥିବା ପ୍ରତ୍ୟେକ ସାଥି ଏହାର ପ୍ରାଣ । ସତ୍ୟର ପ୍ରତିଷ୍ଠା ପାଇଁ ଏହି କାହାଣୀର 'ହରିଶ୍ଚନ୍ଦ୍ର' ଚରିତ୍ର ପରି ଆମର ମଧ୍ୟ ବଳ, ବିଶ୍ୱାସ ଓ ଉଦ୍ୟମ ତେଜି ହେଉ ।

● **Harischandra** ● Original Gujarati - Late Giju Bhai Badheka ● Translation - Purabi Pattanayak ● Illustration - Asit Das ● Published by Manavik family ● Price - Rs. 4.00 ● Publication Period - 1st April 1997.

# ହରିଶ୍ଚନ୍ଦ୍ର

## ଇନ୍ଦ୍ରସଭା

ଇନ୍ଦ୍ର ଲୋକରେ ଦେବତାମାନଙ୍କ ସଭା ବସିଥିଲା । ଦେବରାଜ ଇନ୍ଦ୍ର ସଭା ମଝିରେ ସୁନା ସିଂହାସନ ଉପରେ ବସିଥିଲେ । ସ୍ୱର୍ଗର ସବୁ ଦେବତା ସେଠାରେ ଏକାଠି ହୋଇଥିଲେ । ମର୍ତ୍ତ୍ୟଲୋକରୁ ମୁନି, ଋଷିମାନେ ବି ପହଞ୍ଚିଥିଲେ । ଗର୍ନ୍ଧବ, ଯକ୍ଷ, କିନ୍ନର ଆଦି ସମସ୍ତେ ଗୋଟିଏ ପଟେ ଠିଆ ହୋଇଥିଲେ । ମେନକା, ରମ୍ଭା ଆଦି ଅପସରାମାନେ ମଧୁର ସ୍ୱରରେ ଗାଉଥିଲେ । ଦେବର୍ଷି ନାରଦ ବି ଏହା ସହ ତାଳ ଦେଇ ବୀଣା ବଜାଉଥିଲେ । ଅଗରୁ-ଚନ୍ଦନ, ଧୂପରେ ସଭାମଣ୍ଡଳ ମହକି ଉଠୁଥିଲା । ଚାରିପଟୁ ମଣିମାଣିକର ଜ୍ୟୋତିରେ ସଭାଟି ଆଲୋକିତ ଦେଖାଯାଉଥିଲା । ଆଜିର ଏହି ସଭାଟିକୁ ଦେବରାଜ ଇନ୍ଦ୍ର ଡ଼କାଇଥିଲେ ।

ହଠାତ୍ ଇନ୍ଦ୍ର ପଚାରିଲେ-ମର୍ତ୍ତ୍ୟରେ ଏପରି କୌଣସି ଲୋକ ଅଛି, ଯିଏ ସତ୍ୟକୁ ରକ୍ଷା କରିବା ପାଇଁ ନିଜର ପ୍ରାଣ ବି ଦେଇଦେବ; କିନ୍ତୁ ସତ୍ୟକୁ ଛାଡ଼ିବ ନାହିଁ ? କଥା ଦେଇଥିଲେ କେବେ ବି ଭୁଲି ଯିବ ନାହିଁ ? ଯାହା ମୁହଁରୁ ଗୋଟିଏ ବି ମିଛ କଥା ବାହାରୁ ନ ଥିବ ?

ଗୀତ, ବାଜା, ସବୁ ବନ୍ଦ ହୋଇଗଲା । ସଭା ସାରା ସମସ୍ତେ ତୁନି ହୋଇଗଲେ । ସମସ୍ତେ ପରସ୍ପରର ମୁହଁ ଚାହାଁଚାହିଁ ହେଲେ । ମର୍ତ୍ତ୍ୟରେ ଏପରି ଲୋକଟିଏ ଭଲା କିଏ ହୋଇପାରେ ?

ଗୋଟିଏ କୋଣରୁ ଧୀର-ଗମ୍ଭୀର ସ୍ୱର ଶୁଣାଗଲା - "ହେ ମହାରାଜ ! ଦୁନିଆରେ ଏପରି ଜଣେ ଲୋକ ଅଛି, ଯିଏ କି ମିଛ କହୁନାହିଁ । କେବେ ମିଛରେ କଥା ଦେଉନାହିଁ । ଦେଇଥିବା କଥାକୁ କେବେ ଏଡ଼ି ଦେଇନାହିଁ । ହଁ, ଏହିପରି ଜଣେ ଲୋକ ଅଛି, ଯାହାର ନାଁ ହେଉଛି- ହରିଶ୍ଚନ୍ଦ୍ର ।"

ହରିଶ୍ଚନ୍ଦ୍ରଙ୍କ କୁଳଗୁରୁ ବଶିଷ୍ଠ ଏତିକି କହି ଚୁପ୍ ହୋଇଗଲେ ।

ଦେବସଭାରେ ସମସ୍ତେ ହରିଶ୍ଚନ୍ଦ୍ରଙ୍କର ଜୟଗାନ କରିବାରେ ଲାଗିଲେ । ହରିଶ୍ଚନ୍ଦ୍ର ଓ ତାଙ୍କ ବାପା-ମା'ଙ୍କୁ ମଧ୍ୟ ଧନ୍ୟ ଧନ୍ୟ କହିବାରେ ଲାଗିଲେ ।

ସେହି ଦେବସଭାରେ ମହର୍ଷି ବିଶ୍ୱାମିତ୍ର ମଧ୍ୟ ଉପସ୍ଥିତ ଥିଲେ । ହରିଶ୍ଚନ୍ଦ୍ରଙ୍କ

ଜୟଗାନ ଶୁଣି ସେ ଭୀଷଣ ରାଗିଗଲେ । ଅତ୍ୟଧିକ ରାଗି ଯାଇଥିବାରୁ ତାଙ୍କ ଆଖିଗୁଡ଼ିକ ଲାଲ୍ ହୋଇଯାଇଥିଲା । ତାଙ୍କ ଦେହ ମଧ୍ୟ ଥରୁଥିଲା । ସେ ଠିଆ ହୋଇ କହିଲେ- ''ମହର୍ଷି ବଶିଷ୍ଠ ! ଆପଣଙ୍କୁ ଲଜ୍ଜ୍ୟା ଲାଗୁନାହିଁ ? ଦେବସଭାରେ ମଧ୍ୟ ମିଛ କହୁଛନ୍ତି ?'' ବଶିଷ୍ଠଙ୍କ କଥାକୁ ସେ ବିଶ୍ୱାସ କରିପାରି ନଥିଲେ । କହିଲେ- ଆପଣ ତାଙ୍କର କୁଳଗୁରୁ ବୋଲି ବେଶୀ ପ୍ରଶଂସା କରୁଛନ୍ତି କାହିଁକି ? ବିଶ୍ୱାମିତ୍ରଙ୍କ ରାଗ ଦେଖି ଦେବସଭାଟା ପୂରା ଶାନ୍ତ ହୋଇଯାଇଥିଲା ।

ମହର୍ଷି ବଶିଷ୍ଠ ବିଶ୍ୱାମିତ୍ରଙ୍କ ସବୁ କଥାକୁ ଶାନ୍ତ ହୋଇ ଶୁଣୁଥାନ୍ତି । କିଛି ସମୟ ପରେ ସେ କହିଲେ-''ହେ ମହର୍ଷି ବିଶ୍ୱାମିତ୍ର ! ଆପଣ କ'ଣ ହରିଶ୍ଚନ୍ଦ୍ରଙ୍କୁ ଚିହ୍ନି ନାହାନ୍ତି ? ବୋଧହୁଏ ଆପଣ ଅତ୍ୟଧିକ ରାଗି ଯାଇଥିବା ଯୋଗୁଁ ଭୁଲି ଯାଇଛନ୍ତି । ସେ ତ ମର୍ତ୍ତ୍ୟ ଲୋକର ସମସ୍ତ ରାଜାଙ୍କ ମଧ୍ୟରେ ଶ୍ରେଷ୍ଠ । ତାଙ୍କର ସ୍ତ୍ରୀ ତାରାମତୀ ଓ ପୁଅ ରୋହିତ ମଧ୍ୟ ପୃଥିବୀରେ ଅତ୍ୟନ୍ତ ପ୍ରଶଂସିତ । ଏହି ତିନି ଜଣ ତ ତିନୋଟି ହୀରାଖଣ୍ଡ ପରି ମର୍ତ୍ତ୍ୟଲୋକରେ ଏମାନଙ୍କୁ କିଏ ନ ଚିହ୍ନିଛି ?''

ହରିଶ୍ଚନ୍ଦ୍ରଙ୍କ ପ୍ରଶଂସା ଶୁଣି ବିଶ୍ୱାମିତ୍ର ଆହୁରି ରାଗିଗଲେ । ସେ ଚିତ୍କାର କରିବାକୁ ଆରମ୍ଭ କଲେ-''ବନ୍ଦ କର, ବନ୍ଦ କର । ଏହା ସବୁ ମିଥ୍ୟା । ମର୍ତ୍ତ୍ୟଲୋକରେ ଏପରି କୌଣସି ଲୋକ ନାହିଁ, ଯିଏ କେବେହେଲେ ମିଛ କହିନାହିଁ ଆଚ୍ଛା,ଠିକ୍ ଅଛି - ମୁଁ ତାକୁ ପରୀକ୍ଷା କରିବି ।''

ବିଶ୍ୱାମିତ୍ରଙ୍କ କଥା ଶୁଣି ବଶିଷ୍ଠ ହସି ହସି କହିଲେ-''ହେଉ ମହର୍ଷି, ଆପଣ ଯଦି ବିଶ୍ୱାସ କରୁନାହାନ୍ତି, ତାହାହେଲେ ଆପଣ ତା'ର ପରୀକ୍ଷା ନେଇପାରନ୍ତି । ଆଉ ଯଦି ସେ ଥରେ ମଧ୍ୟ ମିଛ କହିଥାଏ-ତାହାହେଲେ ମୁଁ ନିଜକୁ ମହର୍ଷି କହିବା ବନ୍ଦ କରିଦେବି । ଦିନରାତି ଜଙ୍ଗଲରେ ବସି ତପସ୍ୟା କରିବି ।''

ବିଶ୍ୱାମିତ୍ର ଅତ୍ୟନ୍ତ ରାଗି ଯାଇଥିଲେ । ବଶିଷ୍ଠଙ୍କୁ କହିଲେ - ''ଏ ସବୁ ବନ୍ଦ କର । ଭାବୁଛ ମୁଁ ଡ଼ରିଯିବି ? ଏତିକି ମନେ ରଖିଥାଅ ଯେ, ମୁଁ ତୁମ ହରିଶ୍ଚନ୍ଦ୍ର ଦ୍ୱାରା ମିଛ କଥା କୁହାଇଦେବି । ଥରେ ନୁହେଁ କି ଦି'ଥର ନୁହେଁ । ମୁଁ ତାକୁ ଏମିତି କରିଦେବି ଯେ, ସେ ବାରମ୍ବାର ମିଛ କଥା କହିବାରେ ଲାଗିବ ।'' ତା'ପରେ ସେ ସମସ୍ତ ଦେବତାମାନଙ୍କୁ ସାକ୍ଷୀ ରଖି କହିଲେ , ''ଯଦି ଏହି ସର୍ତ୍ତରେ ବଶିଷ୍ଠ ହାରିଯିବେ, ତାହାହେଲେ ସେ ମହର୍ଷି ପଦରୁ ବିତାଡ଼ିତ ହେବେ । ଯଦି ମୁଁ ହାରେ.... ମୁଁ ତ କେବେହେଲେ ହାରେ ନାହିଁ । ଯଦି ହାରେ, ତାହାହେଲେ ମୁଁ ପ୍ରତିଜ୍ଞା କରୁଛି ଯେ, ମୋ ତପବଳ ଦ୍ୱାରା ମୁଁ ସେହି ହରିଶ୍ଚନ୍ଦ୍ରଙ୍କୁ ସ୍ୱର୍ଗର ଦ୍ୱାର ଦେଖାଇଦେବି । ଏହା ଛଡା ତାଙ୍କୁ ନିଜର ସମସ୍ତ ଶକ୍ତି ମଧ୍ୟ ଦେଇଦେବି । ''

ଦେବସଭାର ସମସ୍ତେ ଆଶ୍ଚର୍ଯ୍ୟ ହୋଇଗଲେ । ବିଶ୍ୱାମିତ୍ର ପ୍ରତିଜ୍ଞା କରିଦେଲେ ! ଇନ୍ଦ୍ର ମଧ୍ୟ ଆଶ୍ଚର୍ଯ୍ୟ ହୋଇଗଲେ । ବିଶ୍ୱାମିତ୍ର କେବେହେଲେ ତାଙ୍କ ପ୍ରତିଜ୍ଞା ଭଙ୍ଗ କରିବେ ନାହିଁ । ସମସ୍ତ ଦେବତାମାନେ ଅତ୍ୟନ୍ତ ଦୁଃଖର ସହ ଚାଲିଗଲେ । ସଭା ଶେଷ ହେଲା

## ରାଜସଭା

ହରିଶ୍ଚନ୍ଦ୍ର ଅଯୋଧ୍ୟାର ରାଜା । ରାଜସଭାରେ ସେ ବସିଛନ୍ତି । ପ୍ରଜାଗଣ ମଧ୍ୟ ଅଛନ୍ତି । ରାଜସଭା ଚାଲିଛି ।

''ମହାରାଜ, ଜଣେ ମହର୍ଷି ଆସିଛନ୍ତି !''

ଜଣେ ମହର୍ଷି ଆସିଥିବା କଥା ଶୁଣି, ରାଜା ଠିଆ ହୋଇଗଲେ । ନିଜେ ଗଲେ ପାଛୋଟି ଆଣିବାକୁ । ସେ ତାଙ୍କର ପାଦ ଛୁଇଁ ଆଶୀର୍ବାଦ ମାଗିଲେ । ବିଶ୍ୱାମିତ୍ରଙ୍କୁ ରାଜ ସିଂହାସନ ପାଖରେ ବସାଇଲେ । ବସାଇ ସାରିଲା ପରେ, ହରିଶ୍ଚନ୍ଦ୍ର ପଚାରିଲେ- ''ମହର୍ଷି, ଆପଣଙ୍କୁ ଅଯୋଧ୍ୟାର ରାଜସଭା ତରଫରୁ ସ୍ୱାଗତ ଜଣାଉଛି । କୁହନ୍ତୁ, ଆଜି କିପରି ଆପଣଙ୍କର ଏଠାକୁ ଆସିବା ହେଲା ? କ'ଣ କିଛି ଦରକାର ଅଛି ?''

ବିଶ୍ୱାମିତ୍ର କହିଲେ,''ରାଜା ! ରାଜାମାନଙ୍କ ମଧ୍ୟରେ ଆପଣ ଶ୍ରେଷ୍ଠ ଅଟନ୍ତି ! ସମସ୍ତ ଋଷିମାନଙ୍କର ଆପଣ ପ୍ରିୟପାତ୍ର ଅଟନ୍ତି । ଆପଣଙ୍କ ପ୍ରଜା ସୁଖୀ ଓ ଶାନ୍ତ ଅଟନ୍ତି । ଆପଣଙ୍କ ବଣପାହାଡ଼ ସବୁ ସୁରକ୍ଷିତ ଅଛି । ରାଜା, ମୁଁ ଆପଣଙ୍କୁ ଗୋଟିଏ ଜିନିଷ ମାଗିବାକୁ ଆସିଛି । ''

ହରିଶ୍ଚନ୍ଦ୍ର କହିଲେ - ''ମାଗନ୍ତୁ ମହର୍ଷି ।''

ବିଶ୍ୱାମିତ୍ର କହିଲେ -''ହେ ମହାରାଜ ! ଗୋଟିଏ ବଡ଼ ଯଜ୍ଞ କରିବାର ଅଛି । ସେଥିପାଇଁ କିଛି ଅର୍ଥ ଦରକାର ଅଛି । ଯଦି ଦେଇପାରନ୍ତେ ....।'' ଏତିକି କହି ବିଶ୍ୱାମିତ୍ର ଚୁପ୍ ହୋଇଗଲେ । ହରିଶ୍ଚନ୍ଦ୍ର କହିଲେ, ''ମହର୍ଷି, କେତେ ଅର୍ଥ ଦରକାର କୁହନ୍ତୁ । '' ବିଶ୍ୱାମିତ୍ର କହିଲେ -ମହାରାଜ ! ମୋର ଏକ କୋଟି ସ୍ୱର୍ଣ୍ଣ ମୋହର ମୋର ଆବଶ୍ୟକ । ଦେଇପାରିବେ ?''

ହରିଶ୍ଚନ୍ଦ୍ର ଆଶ୍ଚର୍ଯ୍ୟ ହୋଇଗଲେ । କିନ୍ତୁ ହରିଶ୍ଚନ୍ଦ୍ର ସତ୍ୟବାଦୀ । କଥାଦେଇ ସାରିଛନ୍ତି । ଫେରାଇବେ ବା କିପରି ?

ହରିଶ୍ଚନ୍ଦ୍ର କହିଲେ-''ହେଉ ମହର୍ଷି । ସୁନାର ମୋହର ପ୍ରସ୍ତୁତ ଅଛି । ଏକ କୋଟି ଏକ ଶହ ଏକ ! ମୁଁ ଏହା ଆପଣଙ୍କର ଆଶ୍ରମରେ ପହଞ୍ଚାଇଦେବି । ''

ବିଶ୍ୱାମିତ୍ର ଜାଣିପାରିଲେ ଯେ, ନିଶ୍ଚୟ ସତ୍ୟବାଦୀ । କହିଲେ-"ନାହିଁ ମହାରାଜ ! ଏବେ ଦରକାର ନାହିଁ । ଦରକାର ପଡ଼ିଲେ ମାଗିବି । "

ହରିଶ୍ଚନ୍ଦ୍ର କହିଲେ,"ହେଉ ମହର୍ଷି, ଯେମିତି ଆପଣଙ୍କର ଇଚ୍ଛା !"

ବିଶ୍ୱାମିତ୍ର ଚାଲିଗଲେ । ଭିତରେ ସେ ରାଗିଯାଇଥାନ୍ତି । ଉପାୟ ଖୋଜୁଥାନ୍ତି- କିପରି ତାଙ୍କୁ ମିଥ୍ୟା ବୋଲି ପ୍ରମାଣିତ କରିବେ? ନିଜର ପ୍ରତିଜ୍ଞା ପାଳନ କରିବେ ? ଏହା ସେ ଭାବିବାରେ ଲାଗିଲେ ।

## ତପର ବଳ

ବିଶ୍ୱାମିତ୍ର ନିଜ ତପବଳ ପ୍ରୟୋଗ କଲେ । ସେ ହଜାର ହଜାର ବଣୁଆ ହିଂସ୍ର ପଶୁ ସୃଷ୍ଟି କଲେ ।

ଅଯୋଧ୍ୟା ନଗରସାରା ହାହାକାର ଖେଳିଗଲା । ସେମାନେ ଗାଈ, ବଳଦ, ଛେଳି, ମଣିଷ ଆଦି ସଭିଙ୍କୁ ମାରି ପକାଇଲେ ।ସବୁ କିଛି ଭାଙ୍ଗିରୁଜି, ଦଳିଚକଟି ପକାଇଲେ । ମଣିଷକୁ ବି ମାରି ଖାଇବାକୁ ଆରମ୍ଭ କଲେ । ଫଳ, ଫୁଲ ଗଛ ଆଦିସବୁ ନଷ୍ଟ କରିଦେଲେ । ଫସଲ ସବୁ ମଧ୍ୟ ନଷ୍ଟ କରିଦେଲେ । ସମସ୍ତେ ଚିତ୍କାର କରିବାରେ ଲାଗିଲେ ।

ସାହାଯ୍ୟ ପାଇଁ ଲୋକେମାନେ ରାଜା ହରିଶ୍ଚନ୍ଦ୍ରଙ୍କ ପାଖକୁ ଧାଇଁଲେ । ହରିଶ୍ଚନ୍ଦ୍ର ଜଙ୍ଗଲର ଏହି ବଣୁଆ ପଶୁଙ୍କୁ ମାରି ପକାଇଲେ । ବାଘ, ସିଂହ, ଗଣ୍ଡା, ଇତ୍ୟାଦିଙ୍କୁ ମାରି ଜଙ୍ଗଲକୁ ପୁଣି ଶାନ୍ତ କରିଦେଲେ ପୂର୍ବପରି ।

ଶିକାର ସରିଗଲା । ଶିକାରୀମାନେ ଫେରିଲେ । ରାଜା ଓ ରାଣୀ ବଶିଷ୍ଠ ଋଷିଙ୍କ ପାଖକୁ ଗଲେ ।

କୁଳଗୁରୁଙ୍କ ପଦ ବନ୍ଦନା କଲେ । ବଶିଷ୍ଠ ଋଷି ସେମାନଙ୍କୁ ଆଶୀର୍ବାଦ କଲେ ଓ ଉପଦେଶ ଦେଇ କହିଲେ, "ମହାରାଜ ! ଆପଣ ଏବେ ନିଜ ରାଜ୍ୟକୁ ଯାଆନ୍ତୁ । ରାସ୍ତାରେ ଆପଣ ଋଷି ବିଶ୍ୱାମିତ୍ରଙ୍କ ଆଶ୍ରମକୁ ଯିବେ ନାହିଁ ।"

ଗୁରୁଦେବଙ୍କ ଉପଦେଶ ପାଳନ କରିବା କର୍ତ୍ତବ୍ୟ । " ଗୁରୁଦେବଙ୍କ ଇଚ୍ଛାପୂରଣ ହେଉ " କହି ଦୁହେଁ ଚାଲିଲେ ।

# ବିଶ୍ୱାମିତ୍ରଙ୍କ ମାୟା

ଏପଟେ ବିଶ୍ୱାମିତ୍ର ବିଚାର ଚଳାଇଥାନ୍ତି - କେମିତି ରାଜା ହରିଶ୍ଚନ୍ଦ୍ରଙ୍କଠୁଁ ରାଜପଦ ଛଡ଼ାଇ ଆଣିବି ? ସେ ତ ବଣୁଆ ପଶୁପକ୍ଷୀଙ୍କୁ ମାରି ପକାଇଲା । ଲୋକଙ୍କ ଦୁଃଖ ଦୂର ହୋଇଗଲା । ଏବେ ମୁଁ କ'ଣ କେମିତି କରିବି ? ହଠାତ୍ ତାଙ୍କର ଗୋଟିଏ ଉପାୟ ମନେ ପଡ଼ିଲା ।

ହରିଶ୍ଚନ୍ଦ୍ର ଓ ତାରାମତୀ ରଥରେ ବସି ଚାଲିଥାନ୍ତି । ବଣର ଶୋଭା ଦେଖୁଥାନ୍ତି ।

" ଆରେ ଦେଖ ଦେଖ ! କେଡ଼େ ସୁନ୍ଦର ସେଇ ହରିଣଟି । କେତେ ବଢ଼ିଆ ଦେଖାଯାଉଛି ।"

ପୁତ୍ର ରୋହିତ, ସେଇଟିକୁ ଆଣିଦେବା ପାଇଁ ବାପାଙ୍କୁ କହିଲେ, "ମୁଁ ତାକୁ ପାଳିବି । ସେ କେତେ ସୁନ୍ଦର ଦେଖାଯାଉଛି । "

ହରିଶ୍ଚନ୍ଦ୍ର ହରିଣ ପଛରେ ରଥ ଚଳାଇଲେ । ହରିଣ ଏପଟ ସେପଟ ହୋଇ ଦୌଡ଼ୁଥାଏ । ରାଜା ମଧ୍ୟ ତାହା ପଛରେ ଚାଲିଥାନ୍ତି । ଆଗରେ ହରିଣ ଓ ପଛରେ ରଥ । ରଥ ପାଖେଇ ଗଲା "ହେଇଟି ଆସିଲା ! ଆରେ କୁଆଡ଼େ ଗଲା ?"

ରାଜା, ରାଣୀ ଓ ରୋହିତ ଋଷିଙ୍କ ଆଶ୍ରମ ପାଖରେ ପହଞ୍ଚି ଯାଇଥିଲେ । ହରିଣଟିକୁ ବିଶ୍ୱାମିତ୍ର ହିଁ ପଠାଇଥିଲେ ।

"ଆରେ, ବଶିଷ୍ଠ ମୁନି ତ ଆମକୁ ଏଠାକୁ ଆସିବାକୁ ମନା କରିଥିଲେ । କିନ୍ତୁ ଆମେ ତ ଆସି ଏଠାରେ ପହଞ୍ଚିଗଲେ । "

"ହେ ଭଗବାନ୍ ! ଯେମିତି ଆପଣଙ୍କର ଇଚ୍ଛା !"ହରିଶ୍ଚନ୍ଦ୍ର କହିଲେ ।

"ଚାଲ, ତାହାହେଲେ ରାଜ୍ୟକୁ ଫେରି ଯିବା !" ତାରାମତି କହିଲେ ।

"ଯିବା ପୂର୍ବରୁ ଟିକେ ହାଲିଆ ମାରିଯିବା !! ଖରା ଜଣା ପଡ଼ିବନି କି କଷ୍ଟ ବି ହେବ ନାହିଁ ।"

ଏକ ସୁନ୍ଦର ପୋଖରୀ ପାଖରେ ରଥଟି ଠିଆ ହୋଇଥିଲା । ଥଣ୍ଡା ଓ ହାଲୁକା ପବନ ବୋହୁଥିଲା । ପକ୍ଷୀମାନଙ୍କର ମଧୁର ରାବ ମଧ୍ୟ ଶୁଣାଯାଉଥିଲା । ରୋହିତ ଗୋଟିଏ କୁଣ୍ଡରୁ ଆଉ ଗୋଟିଏ କୁଣ୍ଡକୁ ଡ଼େଇଁ ରଙ୍ଗ ବେରଙ୍ଗ ମାଛ ଦେଖିବାରେ ଲାଗିଥିଲା ।

ତାରାମତୀଙ୍କୁ ଏହି ସମୟରେ ନିଦ ଆସିଗଲା । କିନ୍ତୁ ବେଶୀ ସମୟ ପାଇଁ ନୁହେଁ । ନିଦ ଆସିଲା ଏବଂ ଚାଲିଗଲା ! ସେ ଧଡ଼୍‌କରି ଉଠି ପଡ଼ିଲେ । କହିଲେ-''ଆରେ ! ଏମିତି କ'ଣ ହେଲା ? ରାଜାଙ୍କର ମୁକୁଟକୁ ତଳେ କିଏ ପକାଇଦେଇଛି ? କିଏ ରାଜାଙ୍କୁ ଅପମାନ ଦେଲା ? ଆରେ, ରାଜ୍ୟ କିଏ ନେଇଗଲା ?''

''ଚିନ୍ତା କରନି, ତାରାମତୀ ! ସେଇଟା ଗୋଟିଏ ସ୍ୱପ୍ନ ଥିଲା ।'' ହରିଶ୍ଚନ୍ଦ୍ର ତାରାମତୀଙ୍କୁ ଏମିତି କହି ଦମ୍ଭ ଦେଲେ । ଧୀର ଭାବରେ କହି ସେ ତାଙ୍କ ଭୟ ଦୂର କରୁଥିଲେ । ମୁଣ୍ଡକୁ ଓ ପିଠିକୁ ଆଉଁସି ଦେଉଥିଲେ । ମନେ ମନେ ସେ ସେଠାରୁ ବାହାରି ଯିବାପାଇଁ ଭାବୁଥାଆନ୍ତି । ରଥ ଚଳାଇବାକୁ ସେ ଆଦେଶ ଦେଲେ ।

ଏତିକିବେଳେ ସେଠାରେ କିଏ ସବୁ ପହଞ୍ଚିଗଲେ । ''ଆରେ, ଏହି ତିନି ଜଣ ତ ବନକନ୍ୟା ପରି ଲାଗୁଛନ୍ତି ।'' ସେମାନେ ସୁନ୍ଦର ବୀଣା ଧରିଥାନ୍ତି । ବାଳରେ ଫୁଲ ଲଗାଇଥାନ୍ତି ଏବଂ ଗଳାରେ ଫୁଲମାଳ ପକାଇଥାନ୍ତି ।

''ମହାରାଜ ! ଆମର ବୀଣାର ଗୀତ ଶୁଣନ୍ତୁ । ଏବେ ଆପଣଙ୍କୁ ଆମ ଗୀତ ଶୁଣିକରି ହିଁ ଯିବାକୁ ପଡ଼ିବ ।''

ରଥ ଠିଆ ହୋଇଗଲା । ରାଜା ଓ ରାଣୀ ବୀଣା ଶୁଣିବା ପାଇଁ ଠିଆ ହୋଇଗଲେ । କନ୍ୟାମାନେ ବୀଣା ବଜାଇବା ଆରମ୍ଭ କଲେ । ଚାରିଦିଗ ଶାନ୍ତ ଓ ମଧୁର ସଙ୍ଗୀତରେ ଭରିଗଲା । ରାଜା ହରିଶ୍ଚନ୍ଦ୍ର ଅତ୍ୟଧିକ ଖୁସି ହୋଇଗଲେ ।

'' ନିଅ, ମୋ ଗଳାର ଏଉ ରତ୍ନହାର ନିଅ । ''

'' ନା, ମହାରାଜ୍; ଆମକୁ ଏହା ଲୋଡା ନାହିଁ । ଆମକୁ ତ ସେଇ ରାଜଛତ୍ରଟି ଲୋଡା; ଧଳା ମୁକ୍ତା ଭଳି ଦେଖାଯାଉଥିବା ଆପଣଙ୍କର ସେହି ରାଜଛତ୍ର । ''

'' ରାଜଛତ୍ର ! ବଣରେ ରହୁଥିବା ଝିଅମାନଙ୍କର ବା ରାଜଛତ୍ର କ'ଣ ଦରକାର ? ବଡ଼ ବିଚିତ୍ର କଥା ତ ? ରାଜା ନିଜର ରାଜଛତ୍ର କିପରି ଦେଇଦେବେ ? ରାଜ୍ୟ ମାନେ ରାଜଛତ୍ର ଓ ରାଜଛତ୍ର ମାନେ ରାଜ୍ୟ । '' ହରିଶ୍ଚନ୍ଦ୍ରଙ୍କ ମନରେ ଏହି ବିଚାର ଆସିଲା । ହରିଶ୍ଚନ୍ଦ୍ର ଆଶ୍ଚର୍ଯ୍ୟ ହୋଇଗଲେ । କହିଲେ, ବନକନ୍ୟା ! ରାଜଛତ୍ର ମଗାଯାଏ ନାହିଁ । ଏହି ହାର ନିଅ ଓ ଫେରିଯାଅ । ''

ବନକନ୍ୟାମାନେ ମାନିଲେ ନାହିଁ । କହିଲେ, ''ରାଜଛତ୍ର ନଦେଲେ ଆମକୁ ବାହା ହୁଅନ୍ତୁ । ''

ହରିଶ୍ଚନ୍ଦ୍ର ଆଶ୍ଚର୍ଯ୍ୟ ହୋଇଗଲେ । ଭାବିଲେ, କେତେ ସାହସ ଏମାନଙ୍କର । ମୋତେ ବାହା ହେବା ପାଇଁ କହୁଛନ୍ତି ! ମୁଁ ପୁଣି ବନକନ୍ୟାଙ୍କୁ ବାହା ହେବି ?

ହରିଶ୍ଚନ୍ଦ୍ର ଜାଣିପାରି ନ ଥିଲେ ଯେ, ଏହା ସବୁ ବିଶ୍ୱାମିତ୍ରଙ୍କର କାମ । ସେ ଏହି ଝିଅମାନଙ୍କୁ ପଠାଇଛନ୍ତି । ଏମାନଙ୍କୁ ସେ ସବୁକଥା ଶିଖାଇଥିଲେ । ଏହା ମାଧମରେ ସେ ହରିଶ୍ଚନ୍ଦ୍ରଙ୍କର ସତ୍ୟ ନିଷ୍ଠକୁ ଭାଙ୍ଗିବାକୁ ନେବାକୁ ଚେଷ୍ଟା କରୁଥିଲେ ।

'' କ'ଣ ମହାରାଜ୍, କୁହନ୍ତୁ ! ଆମକୁ ବାହା ହେବେ ନା ରାଜ୍ୟ ଦେବେ ?''

ହରିଶ୍ଚନ୍ଦ୍ର ବହୁତ ରାଗିଲେ । ନିଜକୁ ସମ୍ଭାଳି ପାରିଲେ ନାହିଁ । ପାଖରେ ପଡ଼ିଥିବା ଗୋଟିଏ ବାଡ଼ିକୁ ଉଠାଇ ଆଣିଲେ । ଏଥିରେ ସେହି ବନ କନ୍ୟାମାନଙ୍କୁ ବାଡ଼େଇବାରେ ଲାଗିଲେ ।

ଏମିତି ଏକ ସମୟର ଅପେକ୍ଷାରେ ଥିଲେ ବିଶ୍ୱାମିତ୍ର । ରାଗ ଗରଗର ହୋଇ ଜଙ୍ଗଲ ମଧ୍ୟରୁ ସେ ବାହାରି ଆସିଲେ । ''ଆରେ ଏ ଦୁଷ୍ଟ, ପାପୀ,ନିଚ ! ଏହି ଗରିବ ବନକନ୍ୟାଙ୍କୁ ମାରିଲାବେଳେ ତତେ ଟିକେ ଲାଜ ଲାଗିଲା ନାହିଁ ? ତୁ ଏହି ଆଶ୍ରମକୁ ଆସିଲୁ କିପରି ? କାହାକୁ ପଚାରି ତୁ ଏହି ଭିତରକୁ ଆସିଥିଲୁ ? ଏଠାର ପାଣି ବି କିପରି ପାଇଲୁ ? କାହାର ଆଜ୍ଞା ପାଇ ତୁ ଏଠାକର ଜିନିଷ ବ୍ୟବହାର କଲୁ ? ଏହି ଗଛର ଛାଇରେ କାହିଁକି ବସିଲୁ ? କାହାର ଆଦେଶରେ ? ହରିଶ୍ଚନ୍ଦ୍ର ! ତୁ କ'ଣ ଜାଣି ନଥିଲୁ ଯେ, ଏହା ମହର୍ଷି ବିଶ୍ୱାମିତ୍ରଙ୍କର ଆଶ୍ରମ ? ମୋତେ ନ ପଚାରି ତୁ ଏଠାକୁ ଆସିଲୁ କିପରି ? ବିଶ୍ୱାମିତ୍ରଙ୍କ କନ୍ୟାମାନଙ୍କୁ ତୁ କ'ଣ ପାଇଁ ବାଡ଼େଇଲୁ ?''

ହରିଶ୍ଚନ୍ଦ୍ର ଆଶ୍ଚର୍ଯ୍ୟ ହୋଇଗଲେ । ''କ୍ଷମା କରନ୍ତୁ ମହାରାଜ ! ମୁଁ ଜାଣିପାରି ନଥିଲି । ଅଜ୍ଞାନକୁ କ୍ଷମା ଦିଆଯାଇଥାଏ । ମହାରାଜ, ରାଗନ୍ତୁ ନାହିଁ ।''

ବିଶ୍ୱାମିତ୍ର କହିଲେ,''କ୍ଷମା ଚାହୁଁଛ ? ଗୋଟିଏ ସର୍ତ୍ତରେ ହିଁ କ୍ଷମା ମିଳିବ । ଏହି ବନକନ୍ୟାମାନଙ୍କୁ ବାହା ହୋଇଯାଅ ଏବଂ ଏମାନଙ୍କୁ ନିଜ ରାଣୀ କରିଦିଅ । ତାହାପରେ ହିଁ କ୍ଷମା ମିଳିବ । ନ ହେଲେ... ''

''ନାହିଁ ମହାରାଜ, ମୋ ଦ୍ୱାରା ଏହା ହୋଇପାରିବ ନାହିଁ । ମୁଁ ଜଣେ କ୍ଷତ୍ରୀୟ । ବନକନ୍ୟାମାନଙ୍କୁ କିପରି ବାହା ହେବ ? ନିଜର ଧର୍ମକୁ କିପରି ଛାଡ଼ିବି ? ମହାରାଜ, କ୍ଷତ୍ରୀୟ ତ ଧର୍ମ ପାଇଁ ବଞ୍ଚେ ଓ ନିଜ ଧର୍ମ ପାଇଁ ହିଁ ମରିଥାଏ । ଆପଣ ଯଦି କହିବେ, ତାହାହେଲେ ନିଜର ରାଜ୍ୟ ଦେଇଦେବି କିମ୍ବା ଜୀବନସାରା ଏମାନଙ୍କ ପାଖରେ କାମ କରିବି । କିନ୍ତୁ ମୁଁ ମୋର ଧର୍ମ ଛାଡ଼ିପାରିବି ନାହିଁ । ''

ବିଶ୍ୱାମିତ୍ର କହିଲେ, ''ହଉ । ଠିକ୍ ଅଛି - ତାହାହେଲେ ତୁ ତୋର ଧର୍ମ ଛାଡ଼ିପାରିବୁ ନାହିଁ । ଯଦି ଧର୍ମ ଛାଡ଼ି ନ ପାରିବୁ, ତାହାହେଲେ ଅଯୋଧ୍ୟା ରାଜ୍ୟଟି ଦେଇ ଦେ । ତା'ପରେ ନିଜ ଧର୍ମର ରକ୍ଷା କରିବୁ । ଧର୍ମ ତୋର ମଙ୍ଗଳ କରିବ ।''

ହରିଶ୍ଚନ୍ଦ୍ର ହାତରେ ପାଣି ନେଇ ବିଶ୍ୱାମିତ୍ରଙ୍କୁ ଅଯୋଧ୍ୟାର ରାଜତ୍ୱ ପ୍ରଦାନ କଲେ । '' ନିଅନ୍ତୁ ମହାରାଜ୍ । ଆଜିଠାରୁ ରାଜ୍ୟ ଆପଣଙ୍କର । ଧର୍ମ ହରିଶ୍ଚନ୍ଦ୍ରର । ''

ରାଜ୍ୟ ସିନା ନେଇଗଲେ । ହେଲେ ବିଶ୍ୱାମିତ୍ର ମନେ ମନେ ହରିଶ୍ଚନ୍ଦ୍ରଙ୍କର ଦାନରେ ମୁଗ୍ଧ ହୋଇଗଲେ । ମନେ ମନେ ତାଙ୍କୁ ସେ ଧନ୍ୟ ଧନ୍ୟ ବୋଲି କହୁଥାନ୍ତି ।

ରାଜା ହରିଶ୍ଚନ୍ଦ୍ର, ରାଣୀ ତାରାମତୀ ଓ ପୁଅ ରୋହିତ ରାଜ୍ୟ ଆଡ଼କୁ ଯିବା ଆରମ୍ଭ କଲେ । ବିଶ୍ୱାମିତ୍ର କହିଲେ - ''ରାଜା ହରିଶ୍ଚନ୍ଦ୍ର, କାଲି ମୁଁ ରାଜ୍ୟକୁ ଯିବି ଓ ରାଜତ୍ୱ ଗ୍ରହଣ କରିବି । କାଲିଠୁଁ ତୁମେ ଜଙ୍ଗଲରେ ରହିବାକୁ ଯିବ ।''

'' ଯଥା ଆଜ୍ଞା, ମହାରାଜ ! ''

ଏତିକି କହି ରାଜା, ରାଣୀ ଚାଲିଗଲେ ।

## ରାଜ୍ୟ-ଦାନ

ସଭା ଚାଲିଥାଏ । ମଝିରେ ରାଜା ହରିଶ୍ଚନ୍ଦ୍ର ବସିଥାନ୍ତି । ପାଖରେ ଋଷି ବିଶ୍ୱାମିତ୍ର ବସିଥାନ୍ତି । ସେ ରାଜ୍ୟ ନେବାକୁ ଆସିଥିଲେ ।

ହରିଶ୍ଚନ୍ଦ୍ର ଠିଆ ହେଲେ । ହସି ହସି କହିଲେ, '' ପ୍ରିୟ ପ୍ରଜାଗଣ ! ଶୁଣନ୍ତୁ ଏବଂ ମୁଁ ଯେମିତି କହିବି ସେମିତି କରନ୍ତୁ । ମୁଁ ଆପଣଙ୍କର ରାଜା ଥିଲି । ଆପଣ ମୋର ପ୍ରଜା ଥିଲେ । ମୁଁ ଆପଣମାନଙ୍କୁ ରକ୍ଷା କରୁଥିଲି ଓ ଆପଣମାନେ ମୋତେ ମାନୁଥିଲେ । ଆପଣଙ୍କ ଦୁଃଖ ମୋର ଥିଲା ଓ ମୋର ଦୁଃଖ ଥିଲା ଆପଣଙ୍କର । ଆପଣଙ୍କ ସ୍ନେହ ପାଇଥିଲି ଓ ମୋର ସ୍ନେହ ଆପଣ ପାଇଥିଲେ । ସୁଖ, ଶାନ୍ତି, ଦୁଃଖ ଓ ଅଶାନ୍ତିର ତାଳ ମିଳାଇ କେତେ ବର୍ଷ ବିତି ଗଲାଣି । ''

'' ଆଜି ଏହାର ଅନ୍ତ ହେବାକୁ ଯାଉଛି । ଆଜି ମୁଁ ମୋର ରାଜପଦ ପରିତ୍ୟାଗ କରୁଛି । ଧର୍ମ ପାଇଁ ମୁଁ ରାଜପଦ ଛାଡୁଛି । କ୍ଷତ୍ରୀୟ ପାଖରେ ଆଉ କୌଣସି ଉପାୟ ନାହିଁ । ଏବେ ଆପଣ ଏହି ମହର୍ଷିଙ୍କୁ ନିଜର ରାଜା ମାନିବେ । ଆପଣ ଏବେ ଏହି ମହର୍ଷିଙ୍କର ପ୍ରଜା ହେବେ । ସୁଖ-ଶାନ୍ତି ବଢ଼ାନ୍ତୁ । ମୋତେ ଭୁଲି ଯିବେନି । ମୋର ସମସ୍ତ ଭୁଲ ଓ ଅପରାଧକୁ ଭୁଲି ଯାଆନ୍ତୁ ।''

''ପ୍ରିୟ ପ୍ରଜାଗଣ । ଏବେ ଏ ଆପଣଙ୍କର ରାଜା ଅଟନ୍ତି ଓ ଆପଣ ତାଙ୍କର ପ୍ରଜା ।'' ହରିଶ୍ଚନ୍ଦ୍ର ମହର୍ଷି ବିଶ୍ୱାମିତ୍ରଙ୍କୁ ରାଜଦଣ୍ଡ ଦେଇଦେଲେ-ରାଜଛତ୍ର ମଧ ଦେଇ ଦେଲେ । ସମସ୍ତ ରାଜସଭା କାନ୍ଦି ଉଠିଲା ।

## ରାଜ୍ୟ-ତ୍ୟାଗ

ରାଜା,ରାଣୀ ଓ ରୋହିତ ବଣକୁ ଯାଉଥିଲେ । ଅଯୋଧ୍ୟା ହା... ହା... କାର ହୋଇଉଠିଲା । ନଗରୀର ପ୍ରଜା ରାଜାଙ୍କୁ ଛାଡ଼ିବା ପାଇଁ ବାହାରିଲେ । ସମସ୍ତେ କାନ୍ଦି ଉଠିଲେ । ପିଲାଠୁଁ ବୁଢ଼ା ପର୍ଯ୍ୟନ୍ତ ସମସ୍ତେ କାନ୍ଦୁଥାନ୍ତି ।

ସମସ୍ତ ପ୍ରଜା ବିଶ୍ୱାମିତ୍ରଙ୍କୁ ଗାଳିଗୁଲଜ କରିବାରେ ଲାଗିଲେ । ''ମହର୍ଷି ନା ଆଉ କ'ଣ ? ଏ ଯମରାଜାଙ୍କର ଅବତାର ଅଟେ ।'' ସମସ୍ତେ କହିବାକୁ ଲାଗିଲେ ।

ବିଶ୍ୱାମିତ୍ର କହିଲେ,''ହରିଶ୍ଚନ୍ଦ୍ର ! ଏହି ରାଜପୋଷାକ ବି ତୁମର ନୁହେଁ । ଏହାକୁ ବାହାର କରି ଏହିଠାରେ ଛାଡ଼ି ଚାଲିଯାଅ । ଗଛର ଛାଲ ପିନ୍ଧିବ । ତାରାମତୀ ଓ ରୋହିତଙ୍କୁ ମଧ୍ୟ ଛାଲ ପିନ୍ଧାଇଦିଅ ।''

''ଯଥା ଆଜ୍ଞା, ମହାରାଜ !''

ରାଜା ହରିଶ୍ଚନ୍ଦ୍ର ବର୍ତ୍ତମାନ ଛତ୍ରହୀନ, ବସ୍ତ୍ରହୀନ, ଅଳଙ୍କାରହୀନ । ଦାସ, ଦାସୀ ମଧ୍ୟ କେହି ନାହାନ୍ତି ତାଙ୍କ ପାଖରେ । ରାଜାରାଣୀ ବର୍ତ୍ତମାନ ରଥହୀନ; ଛାଲ ଗୁଡାଉଥାନ୍ତି । ତା ସାଙ୍ଗକୁ ପାଦୁକାହୀନ । ରୋହିତ ମଧ୍ୟ ସେହିପରି ଅବସ୍ଥାରେ । ଖାଲିପାଦ, ଗଛର ଛାଲ ତାଙ୍କର ପୋଷାକ, ସାଙ୍ଗ ସାଥିହୀନ ଓ ଖେଳଣାହୀନ । ସବୁ କିଛି ସେ ହରାଇ ବସିଛନ୍ତି । ସତ୍ୟ ପାଇଁ ତିନିଜଣ ବନଯାତ୍ରା କରୁଛନ୍ତି । ସମସ୍ତ ପ୍ରଜା ବିଦାୟ ଦେବାକୁ ଆସିଲେ ।

ହରିଶ୍ଚନ୍ଦ୍ରଙ୍କର ଜୟଗାନ ହେବାକୁ ଲାଗିଲା । ହରିଶ୍ଚନ୍ଦ୍ର ଓ ତାଙ୍କ ମାତା-ପିତାଙ୍କୁ ସମସ୍ତେ ଧନ୍ୟ ଧନ୍ୟ ବୋଲି କହିବାରେ ଲାଗିଲେ । ''ସତ୍ୟ ପାଇଁ ନିଜର ସବୁ କିଛି ଦାନ କରିଦେଲ । ''ଧନ୍ୟ ତୁମେ ହରିଶ୍ଚନ୍ଦ୍ର । ''

କଥାରେ ଚତୁର୍ଦ୍ଦିଗ କମ୍ପିଉଠିଲା ।

''ଆରେ କିଏ କ'ଣ କହୁଛି ?''

'' ଏ ତ ବିଶ୍ୱାମିତ୍ର ଅଟନ୍ତି । ''

''ରାଜା ହରିଶ୍ଚନ୍ଦ୍ର କୁଆଡ଼େ ଚାଲିଯାଉଛ ? ମୋର ଏକ କୋଟି ସୁନାର ମୋହର କୁଆଡ଼େ ଗଲା ? ଯେତେବେଳେ ମାଗିବି, ସେତେବେଳେ ଦେବ ବୋଲି କହିଥିଲ ? ''

''ରାଜ ଭଣ୍ଡାରରେ ରଖିଦେଇଛି, ମହାରାଜ !''

''ଆରେ ...ଭଣ୍ଡାର ତ ବର୍ତ୍ତମାନ ରାଜାଙ୍କର -ମାନେ ବିଶ୍ୱାମିତ୍ରଙ୍କର ବର୍ତ୍ତମାନ ସେଥିରେ ତୁମର କୌଣସି ଅଧିକାର ନାହିଁ ।କରଜକୁ ଶୁଝାଇ ଦେଇଯାଅ । ନ ହେଲେ ଛାଣିବ ଯେ, ତୁମେ ବନ୍ଧନରୁ ଫିଟିନାହଁ ।''

ହରିଶ୍ଚନ୍ଦ୍ର ସତ୍ୟବାଦୀ ଥିଲେ । କହିଲେ, ''ଶୁଣନ୍ତୁ, ନିଜର ଦେହ ବିକିବି, ରାଣୀଙ୍କୁ ବିକିବି ଓ ପୁଅକୁ ମଧ୍ୟ ବିକିବି । ତା'ପରେ ଆପଣଙ୍କର କର ଶୁଝି ଦେବି । ମୋତେ ଗୋଟିଏ ମାସର ସୁଯୋଗ ଦିଅନ୍ତୁ । ଗୋଟିଏ ମାସ ମଧ୍ୟରେ କର ନ ଶୁଝିଲେ ହରିଶ୍ଚନ୍ଦ୍ରର ସତ୍ୟ ଚାଲିଯିବ । ''

ସମସ୍ତ ପ୍ରଜା ହା'ହା' କାର କରିବାକୁ ଲାଗିଲେ । ''ଆରେ କେଡ଼େ ବଡ଼ ନିଷ୍ଠୁର ଋଷି ? ଜଳିକି ମରିଯାଉନି କାହିଁକି କେଜାଣି ?'' ସମସ୍ତ ପ୍ରଜା ଅତ୍ୟନ୍ତ ରାଗିଗଲେ । ଯାହା କହିବା କଥା, କହିଗଲେ ।

## କାଶୀ ଯିବା ବାଟରେ

ରାଜା ହରିଶ୍ଚନ୍ଦ୍ର ଆଜି ଜଙ୍ଗଲରେ । ରାଣୀ ବି ଆଜି ଜଙ୍ଗଲରେ । ଅଯୋଧ୍ୟାରୁ କାଶୀ ପର୍ଯ୍ୟନ୍ତ ଜଙ୍ଗଲଟି ଅତ୍ୟନ୍ତ ଘଞ୍ଚ ଥିଲା । ରାସ୍ତା ନିଛାଟିଆ ଥିଲା । ବାଘ, ସିଂହ,ହାତୀ ଓ ଭାଲୁ ଏହି ସମସ୍ତ ଜୀବଙ୍କୁ ପାର କରି ହରିଶ୍ଚନ୍ଦ୍ର ଓ ତାରାମତୀ କାଶୀ ଚାଲିଗଲେ ।

ଏଇଟି ହେଉଛି ପ୍ରଥମ ଦିନ । ସୂର୍ଯ୍ୟଙ୍କ କିରଣ ଅତ୍ୟନ୍ତ ପ୍ରଖର ଥିଲା । ପାଦରେ କଣ୍ଟା ପଶିଯାଉଥାଏ । ଠିକ୍ ରାସ୍ତା ପାଇବା ପାଇଁ ଏପଟ ସେପଟ ଖୋଜିବାକୁ ପଡୁଥାଏ । ରୋହିତ ଅତ୍ୟନ୍ତ ଛୋଟ । ଜଣେ ଛୋଟ ପିଲା ଖାଲି ପାଦରେ ଏତେବାଟ ଚାଲିବା କଷ୍ଟକର ହୋଇଯାଉଥିଲା । କେତେବେଳେ ମା' କାଖ କରିଦେଉଥିଲେ ତ , କେତେବେଳେ ବାପା କାଖ କରିଦେଉଥିଲେ । ଯେଉଁମାନେ ତାଙ୍କୁ ଦେଖୁଥିଲେ ଅତ୍ୟନ୍ତ ଦୁଃଖୀ ହୋଇଯାଉଥିଲେ । ''ଅଯୋଧ୍ୟାର ରାଜାରାଣୀଙ୍କର ଇଏ କି ଅବସ୍ଥା ! କେତେ ବଡ଼ ନିଷ୍ଠୁର ସେହି ବିଶ୍ୱାମିତ୍ର ।'' ସମସ୍ତେ ଏମିତି କହୁଥାନ୍ତି ।

ଏହା ଅତ୍ୟନ୍ତ ସାଧାରଣ ଥିଲା । ବିଶ୍ୱାମିତ୍ର ରାଜା ହରିଶ୍ଚନ୍ଦ୍ରଙ୍କ ସହ ଗୋଟିଏ ପିଲାକୁ ପଠାଇଥିଲେ । ପିଲାଟିର ନାଁ ଥିଲା-ନକ୍ଷତ୍ର । ସେ ଏକ କୋଟି ସୁନାର ମୋହର

ନେବାପାଇଁ ଆସିଥିଲା । ବିଶ୍ୱାମିତ୍ର କହିଥିଲେ, ସେମାନଙ୍କୁ ରାସ୍ତାରେ ହଇରାଣ କରିବା ପାଇଁ । ଯେମିତି ହେଲେ ଡ଼େରି କରିବା ପାଇଁ ଯାହା ଯୋଗୁଁ ସେମାନେ ତିରିଶ ଦିନରୁ କମ୍‌ରେ କାଶୀରେ ନ ପହଞ୍ଚିପାରିବେ । ତିରିଶ ଦିନ ବିତିଗଲେ ରାଜାଙ୍କ ପ୍ରତିଜ୍ଞା ଭାଙ୍ଗିବ । ଏତିକି ଚାହୁଁଥିଲେ ବିଶ୍ୱାମିତ୍ର ।

ନକ୍ଷତ୍ର ବାରମ୍ବାର ହଇରାଣ କରୁଥିଲା । ରାସ୍ତାରେ ଚାଲୁ ଚାଲୁ ହଠାତ୍ ତଳେ ପଡ଼ିଯାଏ ଓ "ପାଣି..ପାଣି " କହି ପାଟି କରେ । "ମରିଯିବି...ମରିଯିବି" କହେ ଓ "ରାଜା ତୁମକୁ ପାପ ଲାଗିବ" ବୋଲି କହେ ।

ଏମିତି ସମୟରେ ପାଣି ବା' କେଉଁଠି ମିଳିବ ? କେଉଁଠି ବି ପାଣି ଦେଖା ଯାଉ ନଥାଏ । ହରିଶ୍ଚନ୍ଦ୍ର ଚିନ୍ତିତ ହୋଇ ପଡ଼ିଲେ । ସେ ଏଠାକୁ ସେଠାକୁ ଦୌଡିବାରେ ଲାଗୁଥିଲେ । "ହେ ଭଗବାନ, ମୋ ମହତ ରଖିବ ! ବିନା କାରଣରେ ମୋତେ ବ୍ରହ୍ମହତ୍ୟା ପାପ ଲାଗିବ ।"

କିଛି ବାଟ ଗଲାପରେ ସେ ଦେଖିଲେ, ଗୋଟିଏ ଝରଣା ବୋହିଯାଉଛି । ହରିଶ୍ଚନ୍ଦ୍ର ପାଣି ଆଣି ନକ୍ଷତ୍ରକୁ ପିଇବାକୁ ଦେଲେ ।

ଏହିପରି ସେ ଚାଲିବାରେ ଲାଗିଥିଲେ ! ଥରେ ହଠାତ୍ ଚାରିପଟେ ନିଆଁ ଲାଗିଗଲା ! "ଆରେ ଇଏ କ'ଣ ହେଲା ? କ'ଣ ସାରା ଜଙ୍ଗଲ ଜଳି ଉଠିଲା ? ଏବେ ଆମେ କେମିତ ବଞ୍ଚିବା ? ବିଶ୍ୱାମିତ୍ରଙ୍କର ଋଣ କେମିତି ଶୁଝିବା ?"

ତାରାମତୀ, ହରିଶ୍ଚନ୍ଦ୍ର ଓ ରୋହିତ କେଉଁଠି ଥିଲେ ? ସେମାନେ ମୃତ୍ୟୁର ସାମ୍‌ନାରେ ଠିଆହୋଇଥିଲେ । ଏବେ ସେମାନେ ଜଳିଯିବେ । ନକ୍ଷତ୍ର ଛାନିଆ ହୋଇଗଲା -"ଆରେ ! ଏ ହରିଶ୍ଚନ୍ଦ୍ର ! ତୁମକୁ କ'ଣ କିଛି ଉପାୟ ଦିଶୁନି ? କ୍ଷଣକ ଭିତରେ ଆମେ ଜଳିଯିବା । ଆରେ ରାଜା ! ଜିଦ୍ କାହିଁକି କଲ ? ବନକନ୍ୟାଙ୍କୁ ବିବାହ କରିଦେଇଥାନ୍ତ । ବିଶ୍ୱାମିତ୍ରଙ୍କୁ ସ୍ମରଣ କର । ଋଷିଙ୍କଠୁ କ୍ଷମା ମାଗିନିଅ । ସେ ଆମକୁ ବଞ୍ଚାଇଦେବେ । "

କିନ୍ତୁ ହରିଶ୍ଚନ୍ଦ୍ର ସତ୍ୟବାଦୀ ଥିଲେ । ସେ କାହିଁକି ବା ଡ଼ରିଥାନ୍ତେ ?" ତାରାମତୀ ! ପ୍ରଥମ ଆହୁତି ମୋତେ ନିଜକୁ ହିଁ ଦେବାକୁ ପଡ଼ିବ । ପ୍ରଥମେ ମୁଁ ହିଁ ନିଆଁକୁ ଡ଼େଉଁଛି । ନିଆଁ ଯଥାଶୀଘ୍ର ଲିଭିଯିବ । ନକ୍ଷତ୍ର ତ ବଞ୍ଚିଯିବ । ବ୍ରାହ୍ମଣକୁ ବଞ୍ଚେଇବାର କିଛିଟା ପୁଣ୍ୟ ତ ମିଳିବ । "

"ଜୟ ଭଗବାନ !" କହି ସେ ନିଆଁରେ ଆହୁତି ଦେବା ପାଇଁ ଧାଇଁଲେ । କିନ୍ତୁ ତାରାମତୀ ତାଙ୍କୁ ଅଟକାଇଲେ ଓ କହିଲେ, "ହେ ରାଜନ୍ ! ଆପଣ ଯଦି ଜଳି ମରିବେ,

ତାହାହେଲେ ଋଣ କିଏ ଶୁଝିବ ? ହରିଶ୍ଚନ୍ଦ୍ର ବଚନ ଭାଙ୍ଗିଦେଲେ , ଦୁନିଆ କ'ଣ କହିବ ? ମୁଁ ଆପଣଙ୍କର ରାଣୀ ଅଟେ । ମୁଁ ଆପଣଙ୍କର ଅଧା ଅଙ୍ଗ ଅଟେ । ଆପଣ ଯେପରି, ମୁଁ ବି ସେପରି । ମୁଁ ଯାଇ ଜଳିବି । ଆପଣ ରୋହିତର, ରାଜ୍ୟର ଓ ନିଜ ବଚନର ରକ୍ଷା କରିବେ ।''

ନିଆଁ ପାଖକୁ ପାଖ ମାଡ଼ି ଆସୁଥାଏ । ଦେହ ଗରମ ହେବାକୁ ଲାଗିଥାଏ । ତାରାମତୀ ହରିଶ୍ଚନ୍ଦ୍ରଙ୍କର ପାଦ ଛୁଇଁଲେ । ପୁଅ ରୋହିତକୁ କୋଲ କଲେ ଓ ଭଗବାନଙ୍କ ନାଁ ନେଇ ନିଆଁକୁ ଡେ଼ଇଁପଡ଼ିଲେ ।

ଇଏ କ'ଣ ହେଲା ? ନିଆଁ କୁଆଡେ଼ ଗଲା ? ତାରାମତୀ ଜଳିଲେ ନାହିଁ । ନିଆଁର ଧାସ ମଧ୍ୟ ତାଙ୍କୁ ଲାଗିଲା ନାହିଁ ।

ଏହା ବିଶ୍ୱାମିତ୍ରଙ୍କ ମାୟା ଥିଲା । ପରୀକ୍ଷା ପାଇଁ ଏପରି କରିଥିଲେ । ସତ୍ୟର ବଳ ଯୋଗୁଁ ରାଜାରାଣୀ ଏହି ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ । ବିଶ୍ୱାମିତ୍ର ହାରିବାକୁ ଲାଗିଥାନ୍ତି । ପାଦ ପାଦରେ ହରିଶ୍ଚନ୍ଦ୍ରଙ୍କର ହିଁ ବିଜୟ ହେଉଥିଲା ।

ଋଷି ଏକଲାରେ ଆସି ନକ୍ଷତ୍ରକୁ କହିଲେ -''ତାରାମତୀକୁ ଛାନିଆ କରିଦେ । ଓଲଟା ପାଠ ପଢ଼ାଇ ଦେ । ତାରାମତୀ ବିନା ହରିଶ୍ଚନ୍ଦ୍ର ଏକଲା ହୋଇଯିବ । ତାହାର ଅଧା ବଳ କମିଯିବ । ତା'ପରେ ସେ ହାଲିଆ ହୋଇଯିବ ଓ ହାରିଯିବ ।''

ଉପଯୁକ୍ତ ସମୟ ଦେଖି ନକ୍ଷତ୍ର ତାରାମତୀଙ୍କୁ କହିଲେ - ''ହେ ରାଜରାଣୀ ! ବ୍ରାହ୍ମଣ ପୁତ୍ର କଥା ମାନିଯାଅ । ଏହି ରାଜା ହରିଶ୍ଚନ୍ଦ୍ର ତୁମକୁ ଓ ତୁମ ପୁଅକୁ କାଶୀର ବଜାରରେ ବିକିଦେବ । ଋଣ ଶୁଝିବା ପାଇଁ ଗାଈ, ବଳଦଙ୍କ ପରି ବିକିଦେବ । ତୁମେ ଏହା ସହି ପାରିବନି । ଏହି ସୁକୁମାର ଛୋଟ ପିଲାଟିକୁ ମଧ୍ୟ ଦୁଃଖ ଦେଉଛ ? ଯିଏ କଥା ଦେଇଛି, ସିଏ ହିଁ ଅସୁବିଧା ଭୋଗ କରିବ । ତୁମେ ଫେରିଯାଅ ଓ ବିଶ୍ୱାମିତ୍ରଙ୍କ ଶରଣରେ ରୁହ । ସେ ତୁମକୁ ତୁମର ରାଜ୍ୟ ଫେରାଇଦେବେ । ରୋହିତକୁ ରାଜ୍ୟଭାର ମିଳିବ । ରାଜମାତା ହୋଇ ତୁମେ ଖୁସିରେ ରହିବ ।''

ତାରାମତୀ ଆଶ୍ଚର୍ଯ୍ୟ ହୋଇଗଲେ ଦୀର୍ଘ ନିଃଶ୍ୱାସ ଛାଡ଼ିଲେ । ମନେ ମନେ ଭାବିଲେ-ଦୁଷ୍ଟ ବାଳକଟା ! ମୋତେ ଶିଖାଉଛି ।

ତାରାମତୀ କହିଲେ, ''ଦେଖ ନକ୍ଷତ୍ର ! ମୋତେ ମୋର ଧର୍ମ ବଡ଼ ପ୍ରିୟ । ହରିଶ୍ଚନ୍ଦ୍ର ମୋର ସ୍ୱାମୀ ଅଟନ୍ତି । ତାଙ୍କରି ସୁଖରେ ମୁଁ ସୁଖୀ ଓ ଯେଉଁଠି ମୁଁ ସେଇଠି ସିଏ । ମୋର ପ୍ରାଣ ପଛେ ଚାଲିଯିବ, କିନ୍ତୁ ମୁଁ ତାଙ୍କଠୁଁ ଅଲଗା ହେବି ନାହିଁ । ତାଙ୍କ ବିନା, ମୁଁ ରାଜ ସୁଖ

ଭୋଗି କ'ଣ କରିବି ? ନକ୍ଷତ୍ର, ସ୍ତ୍ରୀକୁ କେବେହେଲେ ଏମିତି ଶିକ୍ଷା ଦେବ ନାହିଁ । ସ୍ତ୍ରୀର ମନକୁ ତୁମେ ଜାଣିପାରିନାହଁ ।''

ନକ୍ଷତ୍ର ଲଜ୍ଜି ହେଲା । ବିଶ୍ୱାମିତ୍ର ଏହି ପରୀକ୍ଷାରେ ମଧ୍ୟ ସଫଳ ହୋଇପାରିଲେ ନାହିଁ ।

## କାଶୀରେ ପହଞ୍ଚିବା ପରେ

ରାଜା,ରାଣୀ କାଶୀରେ ପହଞ୍ଚିଲେ । ଆଉ ଅଳ୍ପ ଦିନ ବାକି ଥିଲା । ରାଜା ବର୍ତ୍ତମାନ ଏକ କୋଟି ସୁନାର ମୋହର ଦେବେ ନା ନିଜର କଥା ହାରିବେ ?

ହରିଶ୍ଚନ୍ଦ୍ର ମନେ ମନେ ଚିନ୍ତା କରୁଥାନ୍ତି - ଗୋଟିଏ ଦିନରେ, କିଛି ଘଣ୍ଟାରେ, ଏତେ ଅର୍ଥ କିଏ ବା ଦେବ ? ଏଠାରେ ମୋର କିଏ ବା ଚିହ୍ନା ପରିଚିତ ଅଛି ଯେ, ମୋତେ ଏତେ ପଇସା ଦେଇଦେବ ?

ତାରାମତୀ ରାଜାଙ୍କ ଚିନ୍ତାକୁ ବୁଝିପାରିଲେ । କହିଲେ, ''ରାଜନ୍ ! ଆପଣ ଏବେ ଚିନ୍ତା କାହିଁକି କରୁଛନ୍ତି ? ଚାଲନ୍ତୁ ଆମକୁ ବିକିବେ । ସତ୍ୟ ପାଇଁ ବିକିବେ । ପଚାଶ ଲକ୍ଷ ପାଇଁ ଆପଣ ଓ ଆଉ ପଚାଶ ଲକ୍ଷ' ପାଇଁ ମୁଁ ।''

ଅଯୋଧ୍ୟାର ରାଜା ଆଜି ଅଯୋଧ୍ୟାର ରାଣୀଙ୍କୁ ଗଳିକନ୍ଦି, ବଜାର ସବୁଆଡ଼େ ବିକୁଛନ୍ତି - ''ନେବ କିଏ ଏହି ମହିଳାକୁ ? କିଣିବ କିଏ ଏହି ଦାସୀକୁ ? ପଚାଶ ଲକ୍ଷ ହେଉଛି ତାହାର ମୂଲ୍ୟ !''

ସାରା କାଶୀ ସହରରେ ହା'ହା'କାର ଶୁଭିଲା । '' ଏମିତି କି ଦଶା ଆସିଲା ଯେ, ସ୍ୱାମୀ ତା ସ୍ତ୍ରୀକୁ ବିକୁଅଛି ? ଆରେ ଏତେ ଧନ କିଏ ବା ଦେବ ?''

କୌଶିକ ନାମକ ଜଣେ ବ୍ରାହ୍ମଣ ଥିଲା । ସେ ବୁଢ଼ା ହୋଇ ଅସୁନ୍ଦର ଦିଶୁଥାଏ । ତା ଅଣ୍ଟା ବି ପଡ଼ି ଯାଇଥାଏ । ସେ ପଚାଶ ଲକ୍ଷ ଦେଲା ଓ ତାରାମତୀଙ୍କୁ କିଣିନେଲା ।

ରାଣୀ ରାଜାଙ୍କର ପାଦ ଛୁଇଁଲେ । ବାଳକ ରୋହିତକୁ ଗେଲ କଲେ ଏବଂ ଆଖିରେ ଲୁହ ଧରି ଚାଲିଲେ ।

ମନେ ମନେ ସେ ଭଗବାନଙ୍କୁ ଡ଼ାକୁଥାନ୍ତି । ''ହେ ଭଗବାନ୍, ରାଜାଙ୍କର ସତ୍ୟ ରଖିବ ।

ବୁଢ଼ା କୌଶିକ ପଛକୁ ଦେଖିଲା ଏବଂ ରାଗରେ ଗର୍ଜନ କରିଉଠିଲା-''ମା' ସହ ପୁଅ । ପଚାଶ ଲକ୍ଷକୁ ଦୁଇ ଜଣ । ନ ହେଲେ ପଇସା ଫେରାଇଦିଅ । ''

ମା' ଓ ପୁଅ ଦୁଇଜଣ ଗଲେ । ରାଜାଙ୍କର ରାଣୀ ଆଜି... ଚାକରାଣୀ ହେଲେ ଓ ରାଜକୁମାର ଆଜି ଚାକର । ବାପା, ମା', ପୁଅ ଏ ଯାଏଁ ଏକାଠି ଥିଲେ । କିନ୍ତୁ ଆଜି ଅଲଗା ହୋଇଗଲେ । ଦେବତାମାନେ ମଧ୍ୟ ହା' ହା'କାର କରିଉଠିଲେ । ହେ ନିଷ୍ଠୁର ବିଶ୍ୱାମିତ୍ର ! ଆହୁରି ? ଆହୁରି ?

ଅଧା ପଇସା ମିଳିଗଲା ଓ ଆଉ ଅଧା ପଇସା ବାକି ଅଛି । ହରିଶ୍ଚନ୍ଦ୍ର ଜାଗା ଜାଗା ବୁଲିବାକୁ ଲାଗିଲେ । କହି କହି ଚାଲିଲେ-" କିଏ ଏ ଚାକରକୁ କିଣିବ ? ଏହାର ମୂଲ୍ୟ ହେଉଛି ପଚାଶ ଲକ୍ଷ ସୁନା ମୋହର ।"

ଏତେ ବଡ଼ ଧନୀ ରାଜା ଆଜି ସୁନା ମୋହର ପାଇଁ ନିଜକୁ ବିକୁଛି । କିନ୍ତୁ କେହି ତାକୁ କିଣୁନି !

ଶେଷରେ ଜଣେ ଚଣ୍ଡାଳ, ଠକ ବ୍ୟକ୍ତି ତାଙ୍କୁ କିଣିଲା । କିନ୍ତୁ କ'ଣ ପାଇଁ ? ରାଜା ବିକ୍ରିହେଲେ କେବଳ ନିଜର ସତ୍ୟରକ୍ଷା ପାଇଁ ?

ବିଶ୍ୱାମିତ୍ର ପୁଣି ଥରେ ହାରିଲେ । ସତ୍ୟବାଦୀର ସତ୍ୟ ବଞ୍ଚିରହିଲା ।

ଆଉ ପଚାଶ ଲକ୍ଷ ମିଳିଲା ଓ ଏକ କୋଟି ହୋଇଗଲା । ସେ ଏହାକୁ ନକ୍ଷତ୍ରକୁ ଦେଇଦେଲେ ଓ ଋଣ ଶୁଝିଗଲା ।

ହେଲେ ମଧ୍ୟ ବିଶ୍ୱାମିତ୍ର ହାର ମାନିଲେ ନାହିଁ । ଆହୁରି ହଇରାଣ କରିବାକୁ ଚିନ୍ତା କଲେ ।

ଏପଟେ ରାଣୀ ତାରାମତୀ କୌଶିକ ଘରେ ରହିଲେ ଦାସୀ ହୋଇ । କୌଶିକ ବଡ଼ ଦୁଷ୍ଟ ଥିଲା ଓ ତା'ଠୁଁ ବଡ଼ ଦୁଷ୍ଟ ଥିଲା ତା'ର ସ୍ତ୍ରୀ । ସକାଳୁ-ସନ୍ଧ୍ୟା ପର୍ଯ୍ୟନ୍ତ କାମ କରାଉଥାଏ ତାରାମତୀଙ୍କୁ । ସେ ବାସନ ମଜାଠୁଁ ଆରମ୍ଭ କରି ରନ୍ଧାବଢ଼ା କାମ ପର୍ଯ୍ୟନ୍ତ ଘରର ସମସ୍ତ କାମ କରନ୍ତି । ହେଲେ ମଧ୍ୟ ମାଲିକାଣୀ ଗାଳି କରୁଥାଏ ।

ରାଜାଙ୍କ ରାଣୀ ଆଜି ଦାସୀ । ଦିନେ ତାଙ୍କ ପାଟି ଫିଟିଲେ ହଜାର ହଜାର ଚାକର ଆସି ଠିଆ ହେଉଥିଲେ । ଆଜି ସିଏ ନିଜେ ହିଁ ଦାସୀ ।

ରାଣୀ ହାଲିଆ ହୋଇଯାଉଥିଲେ । ରାତିରେ ଅଧା ପେଟ ହିଁ ଖାଇବାକୁ ମିଳୁଛି । ଏତେ କାମ କରି ମଧ୍ୟ କେହି ପେଟପୂରା ଖାଇବାକୁ ମଧ୍ୟ ଦେଉନାହାନ୍ତି । ହେ ଭଗବାନ୍ ! ଏମିତି କଷ୍ଟ କାହାକୁ କେବେହେଲେ ଦେବ ନାହିଁ ।

କୋମଳ ଗଦିରେ ଶୋଇ ଆସୁଥିବା ରୋହିତର କ'ଣ ହେଲା ?

ବିଚରା ବ୍ରାହ୍ମଣ ପିଲାଙ୍କ ସହ ଚିରା କନା ପିନ୍ଧି ବୁଲୁଛି ଓ ବଗିଚାରୁ ଫୁଲ ଆଣୁଛି । ଫଳ ଆଣୁଛି । ବାରଟା, ଦି'ଟା ବେଳକୁ ଭୋକରେ ଘରକୁ ଫେରୁଛି । ଭଲଭଲ ଖାଦ୍ୟ ଦେବା ପାଇଁ ଏଠାରେ କେହି ନ ଥିଲେ । ଶୁଖିଲା ରୁଟି ଛଡ଼ା ଆଉ କିଛି ନଥିଲା । କୌଶିକର ସ୍ତ୍ରୀ ବଡ଼ ଲୋଭୀ ଥିଲା ।

ଅଯୋଧ୍ୟାର ରାଣୀ ଆଜି କାଶୀ ନଗରରେ ଦାସୀ । ଅଯୋଧ୍ୟାର ରାଜପୁତ୍ର ଆଜି ବ୍ରାହ୍ମଣ ଘରେ ଦାସ ଅଛି ।

ଆଉ ରାଜା ହରିଶ୍ଚନ୍ଦ୍ର କ'ଣ ଅଛନ୍ତି ? ସେହି ଚଣ୍ଡାଳ ଘରେ ସିଏ କ'ଣ କରୁଛନ୍ତି ?

ହରିଶ୍ଚନ୍ଦ୍ର ସେହି ଚଣ୍ଡାଳର ଚାକର ଅଛନ୍ତି । ସେ ଯେଉଁ କାମ କହୁଛି, କରୁଛନ୍ତି । ହଁ କହି ତା'ପଛରେ ଗୋଡ଼ାଉଛନ୍ତି । ଆଜି ରାଜା, ରାଜା ହୋଇନାହାନ୍ତି । ଗୋଟାଏ ଚଣ୍ଡାଳ ଚାକରର ଚାକରଠୁଁ ମଧ୍ୟ ହୀନ ।

ରାଜା ଆଉ କ'ଣ କରୁଛନ୍ତି ?

ପୋତିବା ପାଇଁ ଓ ପୋଡ଼ିବା ପାଇଁ ଅଣାଯାଇଥିବା ମଲା ଶବ ପାଇଁ କର ଆଦାୟ କରୁଛନ୍ତି । ଯିଏ ତାଙ୍କୁ ଗୋଟିଏ ପଇସା ଓ ଗୋଟିଏ ତାଟିଆ ଖେଚୁଡ଼ି ଦେଉନି ତାକୁ ଅଟକାଉଛନ୍ତି ।

ସେ ଆଜି ଚଣ୍ଡାଳର କାମ କରୁଛନ୍ତି । ରାସ୍ତା ଘାଟ, ହାଟ ବଜାର, ନାଳ ନର୍ଦ୍ଦମା ସଫା କରୁଛନ୍ତି ।

ଆଉ କ'ଣ କରୁଛନ୍ତି ?

ଅପରାଧୀମାନଙ୍କର ପ୍ରାଣ ନେଉଛନ୍ତି-ରାଜା ହରିଶ୍ଚନ୍ଦ୍ରଙ୍କ କାମ କଂସେଇର କାମ ।

ସେ କେଉଁଠି ରହୁଛନ୍ତି ?

ମଶାଣି ପାଖରେ ଗୋଟେ ଛୋଟ କୋଠରୀରେ ରହୁଛନ୍ତି । ମଇଳା, ଅନ୍ଧାରରେ ରହୁଛନ୍ତି । ଆଖପାଖରେ ମଲାଶବ ସବୁ ପଡ଼ିଛି । ହାଡ଼ ଗଦା ହୋଇଛି । ଦୁର୍ଗନ୍ଧରେ ନାକ ଫାଟି ଯାଉଛି । ରାଜମହଲରେ ରହୁଥିବା ଲୋକ, ବଗିଚାରେ ବୁଲୁଥିବା ଲୋକ ଆଜି ମଶାଣିରେ ରହୁଛି ।

ଏମିତି କାମ କରିବାକୁ ବି ହରିଶ୍ଚନ୍ଦ୍ର ମୁହଁ ମୋଡ଼ି ନାହାନ୍ତି । କାମରେ ଅବହେଳା କରିନାହାନ୍ତି । ସଦାସର୍ବଦା ସେ ହସି ହସି ରହୁଥାନ୍ତି । ସକାଳୁ ଜଲ୍‌ଦି ଉଠି କାମରେ ଲାଗିଯାନ୍ତି ।

ରାଜାରାଣୀ ଦୁଇଜଣ ଏହିପରି ଭାବେ ରହୁଛନ୍ତି । ରାତି ଦିନ କଟାଉଛନ୍ତି ଓ ଦୁଃଖକୁ ସୁଖ ଭାବି ସହି ଯାଉଛନ୍ତି ।

## ଧର୍ମ ସଂକଟ

ହାୟ ! ଏତେ ସବୁ ଘଟଣା ପରେ ମଧ୍ୟ କ'ଣ ହରିଶ୍ଚନ୍ଦ୍ର ସୁଖୀ ଅଛି ? କ'ଣ ଏବେ ବି ତାରାମତୀ ହସୁଅଛି ? ଏବେ ତ ଆହୁରି ଭୟଙ୍କର ଘଟଣା ଘଟିବ ।

ବିଶ୍ୱାମିତ୍ର ତକ୍ଷକ ନାଗକୁ ଡ଼ାକିଲେ ଓ କହିଲେ -''ଫୁଲ ତୋଳୁଥିବା ରୋହିତକୁ ମାରିଦେଇ ତା'ପ୍ରାଣ ନେଇଯାଅ ।''

ତକ୍ଷକ ଫୁଲ ବଗିଚାରେ ଯାଇ ପହଞ୍ଚିଲା ।

ରୋହିତ ମା'ଙ୍କର ଆଜ୍ଞା ନେଇ ଓ ପାଦ ଛୁଇଁ ବାଡ଼ିକୁ ଆସିଛି । ଖରାଯୋଗୁଁ ତା' ଗାଲ ନାଲି ହୋଇଗଲାଣି । ମୁହଁରୁ ଝାଳ ବୋହିଗଲାଣି । ସେ ହାତ ବଢ଼େଇ ବଢ଼େଇ ଫୁଲ ତୋଳୁଥିଲା ।

କିନ୍ତୁ ଏତିକିବେଳେ,''ଆଃ... ମୋତେ ସାପ କାମୁଡ଼ି ଦେଲା'' କହି ତଳେ ପଡ଼ିଗଲା ।

ସମସ୍ତେ ଦୌଡ଼ି ଆସିଲେ । ଗୋଟେ ବ୍ରାହ୍ମଣ ପୁଅ ଘରକୁ ଆସି ତାରାମତୀଙ୍କୁ ଖବର ଦେଇ ଚାଲିଗଲା । ତାରାମତୀ ତଳେ ପଡ଼ିଗଲେ । ରୋହିତର ଏ ଖବର ଶୁଣି ସେ ମୂର୍ଚ୍ଛା ହୋଇଗଲେ ।

କିନ୍ତୁ ରୋହିତ ପାଖକୁ ଯିବା ପାଇଁ କେହି ହେଲେ ନାହିଁ । ମାଲିକ କହିଲା,''ସନ୍ଧ୍ୟାରେ ଯିବୁ । କାମ ସାରି ଯିବୁ । ପୁଅ ପାଇଁ ଏଠାକୁ ଆସିନୁ । କାମ କରିବାକୁ ଆସିଛୁ । ବୁଝିଲୁ ?'' ଏତିକି କହି ସେ ଚାଲିଗଲା ।

ଦାସୀର କଥା କିଏ ଶୁଣିବ ?

ପୁଅର ଏମିତି ସମୟରେ ମଧ୍ୟ କାମ କରିବାକୁ ପଡୁଛି । ସନ୍ଧ୍ୟା ହେଲା ଓ ସେ ବଗିଚାକୁ ଗଲେ । ତା' ପ୍ରାଣ ଚାଲିଯାଇଥିଲା ।

''ରୋହିତ, ନିଜ ମା'କୁ ଛାଡ଼ି କୁଆଡ଼େ ଚାଲିଗଲୁ ? ରୋହିତ ! ରୋହିତ ! ଥରୁଟିଏ କଥା କହ । ଥରକ ପାଇଁ ଉଠେ । ନିଜ ମା'କୁ ଅନ୍ତତଃ ଭେଟ କରି ଯା' ।''

ହେଲେ ରୋହିତ କେମିତି ଉଠିଥାନ୍ତା ? ସାପର ବିଷ ଦେହ ସାରା ଚରି

ଯାଉଥିଲା । ତାରାମତୀ କୁଆଡ଼େ ଯିବେ ? କ'ଣ କରିବେ ? କାହାକୁ ଡ଼ାକିବେ ? ରାଜାରାଣୀଙ୍କର ଇଏ କି ଦଶା !!

ବି' ହାତରେ ରୋହିତର ଶବକୁ ଟେକି ତାରାମତୀ ମଶାଣିକୁ ଗଲେ । ତାରାମାନଙ୍କର ଆଲୁଅ ଝାପ୍‌ସା ଥିଲା । ତାରାମତୀଙ୍କ ଆଗକୁ ଆଜି ଦୁଃଖର ପାହାଡ଼ ମାଡ଼ିଆସିଛି । ମଶାଣିଟା ସାରା ମାଡ଼ି ମାଡ଼ି ପଡୁଛି । ପେଚା ବୋବାଉଛି । ବିଲୁଆ ବି ରଡ଼ି ଛାଡୁଥାନ୍ତି । ଚାରିଆଡ ନିଛାଟିଆ ହୋଇଯାଇଥିଲା । ଭୟଙ୍କର ଜୀବଜନ୍ତୁ ବୁଲୁଥାନ୍ତି । ବିଛା ବୁଲୁଥାନ୍ତି । ସାପ ମଧ୍ୟ ବୁଲୁଥାନ୍ତି । ମଝି ମଝିରେ ଏକ ପ୍ରକାର ଅଦ୍‌ଭୁତ ଗର୍ଜ୍ଜନ ଶୁଣାଯାଉଥାଏ ।

ଏମିତି ଏକ ସମୟରେ ତାରାମତୀ ମଶାଣିରେ ଏକଲା । କୋଳରେ ପୁଅର ଶବ । ନିଜ ପୁଅକୁ କିପରି ନିଜ ହାତରେ ପୋତିବି ? ତାରାମତୀ କାନ୍ଦୁଥାନ୍ତି । ରାଣୀଙ୍କର ଆଜି ଇଏ କି ଅବସ୍ଥା ?

''କିଏ ? କିଏ ସେଇଠି? ଏମିତି ଅନ୍ଧାର ରାତିରେ ସେ'ଠି କିଏ ?''

ରାଜା ହରିଶ୍ଚନ୍ଦ୍ର ଜଗିଥିଲେ । କାଳେ କିଏ ରାତିରେ ଶବ ପୋତି ଚାଲିଯିବ ।

''ଓଃ ! ମୁଁ ତ ଜଣେ ଦୁଃଖୀ ସ୍ତ୍ରୀ । ଭଲ ହେଲା ଯାହା ହେଉ, ଭଗବାନ୍ ଆପଣଙ୍କୁ ଏଠାକୁ ପଠାଇଦେଲେ । ହେ ଭଗବାନ୍ ମୋର ଏହି ପୁଅକୁ ବଞ୍ଚାଇ ଦିଅ । ଆପଣ କ'ଣ ଜଣେ ଦେବତା ? ଆଜି ଏହାକୁ ସାପ କାମୁଡ଼ି ଦେଲା । ଦୟା କରନ୍ତୁ ! ଦୟା କରନ୍ତୁ ! ''

''ଦେଖନ୍ତୁ ହେ ଦେବୀ, ମୁଁ କୌଣସି ଦେବତା ନୁହେଁ । ମୁଁ ତ ଜଣେ ସାଧାରଣ ମଣିଷ । ବୀରବାହୁଙ୍କର ଦାସ ଅଟେ । ମୋର ନାମ ବିରାଧ ଅଟେ । କୁହନ୍ତୁ, ମୁଁ କିପରି ଆପଣଙ୍କର ପୁଅକୁ ବଞ୍ଚାଇବି ? ମୋତେ ଆପଣଙ୍କ ଉପରେ ଦୟା ଆସୁଛି ମାତ୍ର ମୁଁ କ'ଣ କରିପାରିବି ?''

''ଦେବୀ ! କାନ୍ଦ ନାହିଁ । ଏବେ ଏହି ବାଳକର ଜୀବନ ନାହିଁ । ଏବେ ତ ଏହା ଗୋଟିଏ ଶବ । ଦେବୀ, ମୋର କର ଦେଇଦିଅ ଓ ଏହାକୁ ପୋତିଦିଅ ।''

''ଆରେ ! ଭଗବାନ୍‌ଙ୍କର ଇଏ କି ଲୀଳା !''

ମଶାଣିରେ, ଘନ ଅନ୍ଧାର ରାତିରେ ରାଜା ହରିଶ୍ଚନ୍ଦ୍ର ଓ ତାରାମତୀ ! କିଏ କାହାକୁ ଜାଣିପାରୁନାହାନ୍ତି । ଆଉ ପୁତ୍ର ରୋହିତ ? ସିଏ ତ ମରିପଡ଼ିଛି !

''ହେ ଭଗବାନ, କିନ୍ତୁ ମୁଁ କିପରି କର ପଇଠ କରିବି ? ମୋ ପାଖରେ ତ କିଛି ବି

ନାହିଁ । କାଣି କଉଡ଼ିଟାଏ ବି ନାହିଁ । ହେ ଦୟାଳୁ ! ଦୟା କରନ୍ତୁ ମୋତେ । ଏହି ପିଲାଟିକୁ ପୋତି ଦିଅନ୍ତୁ ।

"କ୍ଷମା କରନ୍ତୁ ଦେବୀ, କର ଦେଲେ ହିଁ ଶବକୁ ପୋତିବା ମୋର କାମ ଅଟେ । ମୁଁ ବୀରବାହୁଙ୍କର ଦାସ ଅଟେ । ଯେମିତି ଆପଣଙ୍କର ଇଚ୍ଛା ! କିନ୍ତୁ ଆପଣ ଏତେ ଅଧୈର୍ଯ୍ୟ କାହିଁକି ହେଉଛନ୍ତି ? ଆପଣଙ୍କ ଗଳାରେ ଯେଉଁ ମଙ୍ଗଳସୂତ୍ରଟି ଅଛି, ତାହାକୁ ବିକି ଦିଅନ୍ତୁ । ଏଥିରୁ କର ଦେଇପାରିବେ । ଯାଆନ୍ତୁ ଦେବୀ, ଏହିଟିକୁ ଜଲ୍‌ଦି ବିକି ପଇସା ନେଇ ଆସନ୍ତୁ ।

"ମଙ୍ଗଳସୂତ୍ର ? ମୋ ଗଳାର ମଙ୍ଗଳସୂତ୍ରକୁ ଇଏ ଦେଖିପାରୁଛନ୍ତି ? ରାଜା ହରିଶ୍ଚନ୍ଦ୍ର ବିନା ଏହାକୁ ଆଉ କିଏ ଦେଖିପାରିବ ? ସିଏ ହିଁ ଏହିଟିକୁ ଦେଖିପାରିବେ;" ଦେବୀଙ୍କର ଏମିତି ହିଁ ବରଦାନ ରହିଥିଲା । "ତାହାହେଲେ କ'ଣ ଇଏ ସତରେ ରାଜା ହରିଶ୍ଚନ୍ଦ୍ର ? ହେ ମହାରାଜ୍ ହରିଶ୍ଚନ୍ଦ୍ର !"

"ହେ ତାରାମତୀ !"

"ରୋହିତ ! ଆମ ପ୍ରିୟ ପୁତ୍ର ରୋହିତକୁ ସାପ କାମୁଡ଼ି ଦେଲା ?" "ଆରେ ! କ'ଣ ହେଲା ? ଆମ ପ୍ରିୟ ରୋହିତକୁ ସାପ ମାରିଦେଲା ? "ରୋହିତ ! ପୁଅ ରୋହିତ !"

ରାଜା ଓ ରାଣୀ ଦୁଇଜଣ କାନ୍ଦିବାରେ ଲାଗିଲେ । ତାଙ୍କ ଦୁଃଖରେ ସତେ ଯେମିତି ସାରାରାତି ମଧ୍ୟ କାନ୍ଦି ଉଠୁଥାଏ । ସମସ୍ତ ଗଛଲତା ମଧ୍ୟ କାନ୍ଦୁଥିଲେ ।

ସାରା ପୃଥିବୀ ସତେ ଯେମିତି ତାଙ୍କ ଦୁଃଖରେ କାନ୍ଦି ପକାଇଲା ।

"ତାରାମତୀ, ତୁମେ ଯାଅ ଓ ମଙ୍ଗଳସୂତ୍ରଟିକୁ ବିକି କର ପଇଠ କର । ଏହା ହିଁ ଏକମାତ୍ର ଉପାୟ । କର ନ ନେଇ ମୁଁ ଏହି ଆଜ୍ଞା ଦେଇପାରିବି ନାହିଁ ।

ରାତି ଅଧରେ ତାରାମତୀ ମଙ୍ଗଳସୂତ୍ର ବିକିବା ପାଇଁ ବାହାରିଲେ ।

ରାତି ଅଧରେ ହରିଶ୍ଚନ୍ଦ୍ର ରୋହିତର ଶବକୁ ଜଗି ବସିଥାନ୍ତି ।

ଧନ୍ୟ ତୁମେ, ସତ୍ୟବୀର ହରିଶ୍ଚନ୍ଦ୍ର ! ଧନ୍ୟ ତୁମେ ସତ୍ୟ ବୀରାଙ୍ଗନା ତାରାମତୀ !

# ଧର୍ମର ପରୀକ୍ଷା

ବିଶ୍ୱାମିତ୍ରଙ୍କର ପରୀକ୍ଷା କ'ଣ ଏତିକିରେ ସରିଲା ? କ'ଣ ଏବେ ମଧ୍ୟ ତାଙ୍କ ଆଖିରେ ଲୁହ ଆସିନି ?

ନା' । ଏବେ ତ ସେ ଆହୁରି ପରୀକ୍ଷା ନେବେ । ନିଜର ପୂରା ରାଗର କଠୋରତା ଦେଖାଇଦେବେ ।

ସେତେବେଳେ କାଶୀରେ ବିପତ୍ତି ପଡ଼ିଥାଏ । ଚୋରମାନେ ଚୋରି କରିବାକୁ ସୁଯୋଗ ପାଉଥାନ୍ତି । ସେମାନେ ନଗରର ସବୁଠାରୁ ଧନୀ ଲୋକର ପୁଅକୁ ଚୋରି କଲେ । ହୀରା, ମୋତି, ସୁନା ଓ ରୂପା ମଧ୍ୟ ଚୋରିକଲେ ।

ବିଶ୍ୱାମିତ୍ରଙ୍କୁ ସୁବିଧା ମିଳିଗଲା । ସେ ଚୋରମାନଙ୍କୁ ସାଙ୍ଗ କଲେ । ଧନୀ ଲୋକର ପୁଅକୁ ସେ ଲୁଚାଇ ଦେଲେ । ଚୋରମାନଙ୍କୁ ବୁଝାଇଦେଲେ , ସେମାନଙ୍କୁ କ'ଣ କରିବାକୁ ହେବ ।

ଆରେ, ଏ ମହିଳାଟି ରାତି ଅଧରେ କୁଆଡ଼େ ଯାଉଛି ?

''ଭାଇ, ମୋର ଏହି ମଙ୍ଗଳସୂତ୍ରଟିକୁ ବିକିବାକୁ ଯାଉଛି । ମୋ ପୁଅକୁ ପୋତିବା ପାଇଁ କର ଦେବାକୁ ହେବ । ସେଇଥିପାଇଁ ଯାଉଛି ।

କ'ଣ ପାଇଁ ବିକୁଛ ତାକୁ ? ନିଅ, ଏଥିରେ କିଛି ପଇସା ଅଛି । କାଲି ମୋତେ ଶୁଝି ଦେବ । ଦେଖ ଏଇ ବୁକୁଳାଟିକୁ ଜାଗ୍ରତରେ ରଖିଥିବ ।

ଚୋରମାନେ ଚୋରି କରିଥିବା ଧନକୁ ତାରାମତୀଙ୍କୁ ଦେଇଦେଲେ ।

କ'ଣ ତାରାମତୀଙ୍କୁ ଚୋରି ଦୋଷ ଲାଗିବ ? ନଗରୀର ସବୁଠାରୁ ଧନୀ ଲୋକର ପୁଅରହତ୍ୟା ଦୋଷ ତା' ମୁଣ୍ଡରେ ପଡ଼ିବ ? ହରିଶ୍ଚନ୍ଦ୍ର ତାଙ୍କୁ ଜୀବନରେ ମାରିଦେବେ ?

ଏବେ ମଧ୍ୟ ବିଶ୍ୱାମିତ୍ର ମାନିଲେ ନାହିଁ ?

ରାଣୀ ତାରାମତୀ ପଇସା ନେଇ ମଶାଣି ଆଡ଼କୁ ଯାଉଥିଲେ । ସକାଳ ହେବାକୁ ଯାଉଥିଲା । ପୁଣି ଥରେ ତାଙ୍କୁ କାମକୁ ଯିବାକୁ ଥିଲା-ଧର୍ମର ପାଳନ ମଧ୍ୟ କରିବାକୁ ଥିଲା ।

ଏପଟେ ବିଶ୍ୱାମିତ୍ର ମିଛରେ ସିପାହୀଙ୍କୁ ଖବର ଦେଇ ଦେଇଥିଲେ । ସିପାହୀମାନେ ଚାରିଆଡ଼େ ଦୌଡ଼ିବାକୁ ଲାଗିଲେ ।

"ସେହି ସ୍ତ୍ରୀ ଲୋକଟିକୁ ଧର । ଜଲ୍‌ଦି ଧର !"

"ହଁ ହଁ, ଏ ସେହି ହତ୍ୟାକାରିଣୀ ବୋଧ ହୁଏ !"

"ଆରେ ଦେଖ, ତା' ହାତରେ ହୀରା ମୋତିର ବୁକୁଳା ମଧ୍ୟ ଅଛି ।

"ଧନୀ ଲୋକର ପୁଅ କାହିଁ ? କୁଆଡ଼େ ଫିଙ୍ଗିଦେଲୁ ? କେଉଁଠି ଲୁଚାଇଛୁ ?"

ଚାରିଆଡୁ ସିପାହୀମାନେ ତାରାମତୀଙ୍କୁ ଘେରିଦେଲେ । ତାଙ୍କୁ ଶିକୁଳିରେ ବାନ୍ଧି ନେଇଗଲେ ।

" କିନ୍ତୁ ........"

"କିନ୍ତୁ ଫିନ୍ତୁ କିଛି ନାହିଁ ! ଚୋରି କଲ ! ହତ୍ୟା ମଧ୍ୟ କଲ ! ଚାଲ ଏବେ ବିଚାରପତିଙ୍କ ପାଖକୁ ।"

ସେପଟେ ହରିଶ୍ଚନ୍ଦ୍ର ଆକୁଳ ହୋଇ ତାରାମତୀଙ୍କ ଆସିବାର ବାଟକୁ ଅନେଇ ବସିଥିଲେ । ଏପଟେ ସିପାହୀମାନେ ତାରାମତୀଙ୍କୁ କୋର୍ଟକୁ ନେଇ ଯାଉଥିଲେ ।

ବିଚାରପତି ରାୟ ଦେଲେ-"ନେଇଯାଅ ଏହି ଦୋଷୀକୁ ! ମଶାଣିକୁ ନେଇଯାଅ ! ତା'ର ମୁଣ୍ଡକାଟ ହେବ । ଚୋର, ହତ୍ୟାକାରୀକୁ ଦେଇଯାଅ ।"

ଦୁଃଖରେ ବ୍ୟାକୁଳ ତାରାମତୀ ଆଉ କ'ଣ କହିଥାନ୍ତେ ? କ'ଣ କହନ୍ତେ ? କେମିତି ବା କହିଥାନ୍ତେ ? କିଏ ଶୁଣିଥାନ୍ତା ତାଙ୍କ କଥା ?

ବିନା ଖୋଜାଖୋଜିରେ, ଜଣେ ନିର୍ଦ୍ଦୋଷୀକୁ ଦୋଷ ଦିଆଗଲା ।

ମଶାଣିରେ ହରିଶ୍ଚନ୍ଦ୍ର ତାରାମତୀଙ୍କ ଆସିବା ବାଟକୁ ଚାହିଁ ରହିଥିଲେ । "ଆରେ ଇଏ କ'ଣ ? ତାରାମତୀଙ୍କୁ ସିପାହୀମାନେ ବାନ୍ଧିଛନ୍ତି କାହିଁକି ? ଏବଂ ବିଚାରପତି ତା'ର ମୁଣ୍ଡକାଟ ପାଇଁ ଆଦେଶ ମଧ୍ୟ ଦେଇଛନ୍ତି ?

"ବିରାଧ ! ଏହି ସ୍ତ୍ରୀ ଲୋକଟି ହତ୍ୟା କରିଛି । ଚୋରି ମଧ୍ୟ କରିଛି । ଏହିକ୍ଷଣି ଏହାର ମୁଣ୍ଡକାଟ କର ।"

ଆଉ ହରିଶ୍ଚନ୍ଦ୍ର କ'ଣ କଲେ ?

ହରିଶ୍ଚନ୍ଦ୍ରଙ୍କୁ ବହୁତ ବଡ଼ ଧକ୍କା ଲାଗିଲା । " ମୋ ତାରାମତୀଙ୍କ ଉପରେ ପୁଣି ଏମିତିଆ ଦୋଷ ?ମୋ ଦ୍ଵାରା ହିଁ ତାର ବଧ ହେବ ? ବିଚାରୀ ନିର୍ଦ୍ଦୋଷୀ ତାରାମତୀ !! "

ଆଉ ତାରାମତୀ ?

ତାରାମତୀ ଠିଆ ହୋଇଥିଲେ । ହତ୍ୟାଖୁଣ୍ଟ ପାଖରେ ଠିଆ ହୋଇଥାନ୍ତି **ଶେଷ** ସମୟର ଅପେକ୍ଷାରେ । ଦେବଗଣ, ତାରା, ପବନ ଓ ଗଛ ସମସ୍ତେ **ଆଶ୍ଚର୍ଯ୍ୟ** ହୋଇଗଲେ । ଚତୁର୍ଦ୍ଦିଗ ହା ହା କାରରେ କମ୍ପି ଉଠିଲା ।

"ରାଜନ୍ ! ଚିନ୍ତା କରନ୍ତୁ ନାହିଁ । ଆପଣ ପଛଘୁଞ୍ଚା କାହିଁକି ଦେଉଛନ୍ତି ? ଧର୍ମର ପାଳନ କରନ୍ତୁ । ମୁଁ ନିର୍ଦ୍ଦୋଷୀ; କିନ୍ତୁ ମୋତେ କଳଙ୍କିତ କରାଯାଉଛି । କିନ୍ତୁ ଆପଣ ଆପଣଙ୍କର ଧର୍ମପାଳନ କରନ୍ତୁ । ଧର୍ମ ପାଇଁ ଦାସ ହୋଇଛନ୍ତି । କିନ୍ତୁ ମୋ ପାଇଁ ବୋଲି ଧର୍ମର ଉଲଂଘନ କରନ୍ତୁ ନାହିଁ । ଧର୍ମ ଆପଣଙ୍କୁ ରକ୍ଷାକରିବ ।"

ତାରାମତୀ ହରିଶ୍ଚନ୍ଦ୍ରଙ୍କ ପାଦ ଛୁଇଁଲେ । ରୋହିତର ଶବକୁ କୋଲ କରି ମରିବା ପାଇଁ ପ୍ରସ୍ତୁତ ହୋଇଗଲେ ।

"ହେ ଭଗବାନ୍ ! ମୋତେ ଜନ୍ମ ଜନ୍ମାନ୍ତରରେ ହରିଶ୍ଚନ୍ଦ୍ରଙ୍କ ପରି ସ୍ୱାମୀ ହିଁ ଦେବେ । ସେ ରାଜା ଓ ମୁଁ ରାଣୀ । ଆମକୁ ଜନ୍ମ ଜନ୍ମାନ୍ତରରେ ସାଥି ହୋଇ ରହିବାକୁ ଦେବେ । ସତ୍ୟ ପାଇଁ ହିଁ ବଞ୍ଚିବୁ ଓ ସତ୍ୟ ପାଇଁ ହିଁ ମରିବୁ ।"

ହରିଶ୍ଚନ୍ଦ୍ର **ମନେ** ମନେ କାନ୍ଦି ପକାଇଲେ । ତାଙ୍କ ଆଖି ଛଳଛଳ ହୋଇଯାଇଥିଲା ।

ଏଥିରେ ସେ **ନିଜର** ଖଣ୍ଡା ଆଣିଲେ ଓ ମାରିବା ପାଇଁ ପ୍ରସ୍ତୁତ ହୋଇଗଲେ ।

ଚତୁର୍ଦ୍ଦିଗରେ **ଏକ ପ୍ରକାର** ଶବ୍ଦ ଖେଳିଗଲା ।"ରୁହ ହରିଶ୍ଚନ୍ଦ୍ର ! ରୁହ !" କିଏ ଜଣେ ତାଙ୍କ ହାତ ଧ**ରି ଦେଲେ** ।

ଉପରୁ ଫୁଲ ଖସିବାକୁ ଲାଗିଲା । ମିଠା ଓ ହାଲୁକା ଥଣ୍ଡା ପବନ ବୋହିଲା । ପୂର୍ବ ଦିଗରେ **ସୂର୍ଯ୍ୟ** ଉଇଁଲେ । ସାରା ଦୁନିଆ ହସିବାରେ ଲାଗିଥାଏ । ବିଶ୍ୱାମିତ୍ର ରୋହିତ ଦେହରୁ **ବିଷ କାଢ଼ିଦେଲେ** । ରୋହିତର ଚେତା ଫେରିଆସିଲା ।

ଚାରିଆଡ଼େ ହରିଶ୍ଚନ୍ଦ୍ର ଓ ତାରାମତୀଙ୍କର ଜୟଗାନ ହେବାରେ ଲାଗିଥାଏ । ଧର୍ମ ଓ ସତ୍ୟର ଜୟଗାନ ହେବାକୁ ଲାଗିଥାଏ । ତାରାମତୀ ଓ ହରିଶ୍ଚନ୍ଦ୍ର ବିଶ୍ୱାମିତ୍ରଙ୍କର ପାଦ ଛୁଇଁଲେ । ନିଜର ପ୍ରତିଜ୍ଞା ଅନୁଯାୟୀ ସେ ତାଙ୍କର ତପବଳ ଓ ତେଜ ପ୍ରଦାନ କଲେ ।

ବଶିଷ୍ଠ ମଧ୍ୟ ଫୁଲ ପକାଇବରେ ଲାଗିଥାନ୍ତି ।

ଚାରିଦିଗରୁ ଶୁଭୁଥାଏ " ଧନ୍ୟ ଧନ୍ୟ ସତ୍ୟବୀର ହରିଶ୍ଚନ୍ଦ୍ର । "



# ପିଲାଙ୍କ ଗାନ୍ଧୀ - ଗିଜୁଭାଇ

''ମୁଁ ପ୍ରତି କ୍ଷଣରେ କୁନି ପିଲାଙ୍କ ମଧ୍ୟରେ ବିରାଜିତ ମହାନ ଆତ୍ମାକୁ ଦର୍ଶନ କରୁଅଛି । ଏହି ଦର୍ଶନ ହିଁ ମୋତେ ପ୍ରେରଣା ଯୋଗାଉଛି । ଏହା ଅନୁସାରେ ପିଲାଏ ନିଜ ଅଧିକାର ପାଇବା ଯାଏଁ ମୁଁ ମୋର ଉଦ୍ୟମ ଜାରି ରଖିବି । ଏହି ଚେଷ୍ଟା କରୁ କରୁ ମୁଁ ପଛେ ମରିଯିବି ।''

ଏହି ବିଚାର ଓ କାମ ଯୋଗୁଁ ହିଁ ଗୁଜରାଟ ଓ ଗୁଜରାଟ ବାହାରେ ଶିକ୍ଷା ଜଗତରେ ଗିଜୁଭାଇ ବାଧେକାଙ୍କୁ *'ପିଲାଙ୍କ ଗାନ୍ଧୀ'* ବୋଲି କୁହାଯାଉଥାଏ । ପିଲାଙ୍କ ଶିକ୍ଷା ପାଇଁ ସମର୍ପିତ ଏହି ସାଧକଙ୍କର ସାଧନା ଆରମ୍ଭ ହୋଇଥିଲା, ଯେତେବେଳେ ସେ ପ୍ରଥମେ ବାପା ହେଲେ । ନିଜ ପୁଅକୁ ଠିକ୍ ଭାବରେ ଲାଳନ ପାଳନ କରିବା ଓ ତା'ର ଏକ ସୁସ୍ଥ ବିକାଶ ପାଇଁ ସେ ଖୁବ୍ ବିଚାରଶୀଳ ଥିଲେ । ଏହି କୌତୂହଳୀ ହିଁ ତାଙ୍କୁ ଶିଶୁ ଶିକ୍ଷା ବିଶାରଦା, ବିଦେଶିନୀ ମାରିଓ ମୋଣ୍ଟେସରୀଙ୍କ ବହି ଆଡକୁ ଟାଣି ଥିଲା । ଇଟାଲୀର ଏହି ମହିଳାଙ୍କ ଶିଶୁ-ଶିକ୍ଷା-ସାହିତ୍ୟ ହିଁ ତାଙ୍କର ଗୁରୁ ହୋଇଗଲା ।

ଏହି ବହିଗୁଡିକ ତାଙ୍କୁ ପ୍ରେରଣା ସାଙ୍ଗକୁ ମନ ବଳ ବି ଯୋଗାଇଲା । ସେ ନିଜର ମୂଳ ପେଷା ଓକିଲାତି ଛାଡି ଦେଲେ । ଶିଶୁ ଶିକ୍ଷା ଦିଗରେ ସେ ମନ ଦେଇ ଲାଗିଲେ । ଭାବନଗର ଠାରେ ଥିବା *ଶ୍ରୀ ଦକ୍ଷିଣମୂର୍ତ୍ତି ବିଦ୍ୟାର୍ଥୀ* ଭବନର ସେ ଜଣେ ଆଜୀବନ ସଭ୍ୟ ହେଲେ । ୧୯୧୬ରୁ ୧୯୨୦ ମସିହା ଯାଏଁ ସେ *ବିନୟ ମନ୍ଦିରର* ଆଚାର୍ଯ୍ୟ ରହିଲେ । ଅଢେଇରୁ ଛଅ ବର୍ଷର ପିଲାଙ୍କ ଶିକ୍ଷା ପାଇଁ ସେ ବାଳମନ୍ଦିର ସ୍ଥାପନ କଲେ । ଏହି ମନ୍ଦିରରେ କେବଳ ପୂଜାରୀ ରୂପରେ ନୁହେଁ; ପିଲାଙ୍କ ଓକିଲ ରୂପରେ ସେ ଲଗାତାର କାମ କରି ଚାଲିଲେ । ''ଯେବେଯାଏଁ ପିଲାଏ ଘରେ ମାଡ ଖାଉଥିବେ ଓ ବିଦ୍ୟାଳୟରେ ଗାଳି ଖାଉଥିବେ, ସେବେଯାଏଁ ମୁଁ ଚୁପ୍‌ଚାପ ରହି ପାରିବି ନାହିଁ.....''

ଏଥିପାଇଁ ସେ ଶିକ୍ଷକ, ଅଭିଭାବକ ଓ ଶାସକ ଆଦି ସମସ୍ତଙ୍କ ସହ ଲଢିଲେ । ଏହି ଲଢେଇର ଫଳ ସ୍ୱରୂପ ୧୯୨୫ ମସିହାରେ ଭାବନଗରରୁ *'ଶିକ୍ଷଣ-ପତ୍ରିକା'* ନାମକ ଏକ ମାସିକ ପତ୍ରିକା ବାହାର କଲେ । ଏହି ପତ୍ରିକା ମରାଠୀ ଓ ହିନ୍ଦୀରେ ବି ବାହାରିଲା ।

ଏବେ ବି ମରାଠୀ ଭାଷାରେ ଏହା ଚାଲିଛି । ଏହାର ବୟସ ଏବେ ୬୨ ବର୍ଷ । ଏଥିରୁ ଆମେ ପତ୍ରିକାଟିର ଲୋକପ୍ରିୟତା ଓ ଉପଯୋଗିତାକୁ ଠଉରାଇ ପାରିବା ।

ଗିଜୁଭାଇ ନାମରେ ବିଖ୍ୟାତ ଏହି ଶିକ୍ଷାପ୍ରେମୀଙ୍କର ଅସଲ ନାମ ଶ୍ରୀ ଗିରିଜା ଶଙ୍କର ଭଗବାନଜୀ ବାଧେକା । ସେ ୧୮୮୫ ମସିହା ନଭେମ୍ବର ମାସ ୧୫ ତାରିଖରେ ଜନ୍ମ ହୋଇଥିଲେ । ତାଙ୍କ କାମ କେବଳ ସୌରାଷ୍ଟ୍ର ଓ ଗୁଜରାଟରେ ସୀମିତ ନଥିଲା । ଏହା ଅନେକ ଦୂର ଯାଏଁ ପ୍ରଭାବ ପକାଇ ପାରିଥିଲା । ୧୯୩୪ ମସିହାରେ ହୋଲକର୍ ରାଜାଙ୍କ ନିମନ୍ତ୍ରଣ କ୍ରମେ ଇନ୍ଦୋର ଠାରେ ସେ ମୋଣ୍ଟେସରୀ ଶିଶୁ ମନ୍ଦିର ଆରମ୍ଭ କରିଥିଲେ । ଏଠାରୁ ସେ ହିନ୍ଦୀ ଭାଷୀ 'ଶିକ୍ଷଣ ପତ୍ରିକା' କୁ ପ୍ରକାଶ କରାଇଲେ । ଏହା ସହିତ ସେ ଏକ ପ୍ରଶିକ୍ଷଣ ବିଦ୍ୟାଳୟ ବି ଆରମ୍ଭ କଲେ । ଏଠାରେ ସେ ୬୦୦ ରୁ ଅଧିକ ଶିକ୍ଷକ, ଶିକ୍ଷିକାଙ୍କୁ ଶିଶୁ ଶିକ୍ଷାରେ ନୂଆ ପ୍ରୟୋଗ ପାଇଁ ତାଲିମ ଦେଲେ ।

ଏହା ସହିତ ସେ ପିଲାଙ୍କ ପାଇଁ ବିଭିନ୍ନ ଉପଯୋଗୀ ଲେଖା ଲେଖି ଚାଲିଲେ । ଶିଶୁ ଶିକ୍ଷା ସମ୍ପର୍କରେ ଗୁଜରାଟୀ ଭାଷାରେ ଗିଜୁଭାଇଙ୍କର ୨୨୩ ଟି ବହି ଛପା ହୋଇଛି । ୨୦ ବର୍ଷର ଅବିରାମ ଉଦ୍ୟମରେ ଗୁଜରାଟରେ ଶିଶୁ ଶିକ୍ଷା ଦିଗରେ ସେ ଏକ ନୂଆ ପରମ୍ପରା ଆଣି ଦେଇ ପାରିଲେ । ଗିଜୁଭାଇ କହୁଥିଲେ -

*''ପିଲାଙ୍କ ଦେହଟି ଛୋଟ । କିନ୍ତୁ ସେମାନଙ୍କ ଆତ୍ମା ମହାନ ଅଟେ । ପିଲାଙ୍କ ଦେହ ବିକାଶଶୀଳ । ତାଙ୍କ ଶକ୍ତି ବି ବିକାଶଶୀଳ । କିନ୍ତୁ ତାଙ୍କ ଆତ୍ମା ତ ସମ୍ପୂର୍ଣ୍ଣ ଅଟେ । ଆମେ ସେହି ଆତ୍ମାକୁ ସମ୍ମାନ ଦେଖାଇବା । ଆମର ଭୁଲ ରୀତି-ନୀତି ଯୋଗୁଁ ପିଲାଙ୍କର ଶୁଦ୍ଧ ଆତ୍ମା ନଷ୍ଟ ଓ କଳୁଷିତ ନହେଉ ।''*

ଏହି ବିଚାରକୁ ଆଧାର କରି ସେ ନିଜର ସାରା ଜୀବନକୁ କାମରେ ଲଗାଇ ଦେଇଥିଲେ । ୧୯୩୯ ମସିହା ଜୁନ୍ ମାସ ୨୩ ତାରିଖରେ ତାଙ୍କର କର୍ମମୟ ଜୀବନର ଅନ୍ତ ହୋଇଥିଲା । ତାଙ୍କର ମୃତ୍ୟୁରେ ମହାତ୍ମା ଗାନ୍ଧୀ 'ସ୍ମରଣାଞ୍ଜଳୀ' ପତ୍ରିକାର ସମ୍ପାଦକଙ୍କ ନିକଟକୁ ଲେଖିଥିଲେ - ''ଗିଜୁଭାଇଙ୍କ ବିଷୟରେ ଲେଖିବାକୁ ମୁଁ ବା କିଏ ? ତାଙ୍କର ଉତ୍ସାହ ଓ ଶ୍ରଦ୍ଧା ମତେ ସବୁବେଳେ ମୁଗ୍ଧ କରିଛି । ତାଙ୍କ କାମ ନିଶ୍ଚୟ ଅଭୁଲା ଅମର ହେବ ।

ଗିଜୁଭାଇ ନିଜ ରାଜ୍ୟ ଓ ଦେଶର ଶିକ୍ଷାଜଗତକୁ 'ପିଲାଙ୍କୁ ଠିକ୍‌ରେ ଦେଖିବା' ('ବାଳଦେବୋ ଭବ') ବିଚାର ମନ୍ତ୍ର ଦେଇଗଲେ । ଏହି ଆଦର ପରଶ ପାଇଥିବା ପିଲାମାନେ ତାଙ୍କୁ 'ନିଶବାଲୀ ମା' ରୂପରେ ଚିହ୍ନିଲେ । ଏହି ଶିକ୍ଷା ମା'ଙ୍କ ମନ ଓ ବିଚାର ଆମକୁ ବାଟ ଦେଖାଉ । ●

# ସାଥି ମଣିଷ ପାଇଁ....

ହେ ମଣିଷ ! ହୁଅ ଆଶାବାନ୍ ।
ହେ ମଣିଷ ! ହୁଅ ଆଶାବାନ୍ ।

ହାତେ ପାଦେ ତୋର ଅସରନ୍ତି ବଳ,
ମଥାରେ ତୋହର ଜ୍ଞାନ କଉଶଳ,
ତୁ ଚାହିଁଲେ ହେବୁ -
ନିଜେ ଭଗବାନ,
ଚାହିଁଲେ ହେବୁରେ
ନିଜେ ଶଇତାନ୍ ।
ହେ ମଣିଷ ! ହୁଅ ଆଶାବାନ୍ ।
ହେ ମଣିଷ ! ହୁଅ ଆଶାବାନ୍ ।

ତୋ ହାତ ଗଢ଼ିଛି ଘର
ଯାନ ବ୍ୟୋମଯାନ,
ତୋ ମଥା ସରଜିଛି
ଏ ଜ୍ଞାନ ବିଜ୍ଞାନ,
ଚାହିଁଲେ ତୁ କରିବୁରେ
ଘରେ ତୋର ସରଗ ଗଠନ !!

ହେ ମଣିଷ ! ହୁଅ ଆଶାବାନ୍ ।
ହେ ମଣିଷ ! ହୁଅ ଆଶାବାନ୍ ।

● ଶ୍ରୀ ବିପ୍ର ଚରଣ ପଟ୍ଟନାୟକ